ଅନିଲ କୁମାର ପାଣିଗ୍ରାହୀ
Anil Kumar Panigrahy

# ଜହ୍ନମାମୁଁ

ସମ୍ପାଦକ : 'ଚକ୍ରପାଣୀ'
ସଞ୍ଚାଳକ : ନାଗିରେଡ୍ଡୀ

ଏହି ସଂଖ୍ୟାରେ ସମାପ୍ତ ହେଲା 'ବୀର ହନୁମାନ'। ଆଗାମୀ ସଂଖ୍ୟାରୁ ଧାରାବାହିକ 'ଦେବୀ ଭାଗବତ'ର ଶୁଭାରମ୍ଭ ହେବ। ଏହି ସଂଖ୍ୟାରୁ ଆରମ୍ଭ ହେଉଛି ଏକ ନୂତନ ବିଭାଗ : ପ୍ରଶ୍ନୋତ୍ତର।

## ଅମର ବାଣୀ

କାବ୍ୟଶାସ୍ତ୍ରବିନୋଦେନ କାଲୋ ଗଚ୍ଛତି ଧୀମତାମ୍।
ବ୍ୟସନେନ ତୁ ମୂର୍ଖାଣାଂ ନିଦ୍ରାୟା କଲହେନ ବା ॥

[କାବ୍ୟ, ଶାସ୍ତ୍ର ଇତ୍ୟାଦି ଉପଭୋଗ କରି ଧୀମାନ୍ ବ୍ୟକ୍ତି ସମୟ କଟାଏ; ବିଳାସ-ବ୍ୟସନ, ନିଦ୍ରା ଓ କଳହରେ ସମୟ ନଷ୍ଟ କରେ ମୂର୍ଖ।]

ବର୍ଷ : ୧୨ ନଭେମ୍ବର ୧୯୭୮ ଅଙ୍କ : ୫

ପ୍ରତି ସଂଖ୍ୟା : ଟ୧.୨୫ :: ବାର୍ଷିକ ମୂଲ୍ୟ : ୧୫.୦୦



# ପ୍ରଶ୍ନୋତ୍ତର

## ଗଙ୍ଗାଧର ଜେନା, ପିଚୁକୁଳ (ଓଡ଼ିଶା)

ପ୍ରଶ୍ନ : ଜହ୍ନକୁ 'ଜହ୍ନ ମାମୁଁ' ବୋଲି କୁହାଯାଏ କାହିଁକି ?"

ଉତ୍ତର : ଦେବ ଓ ଦାନବମାନେ ମିଳି ଅମୃତ ପାଇବା ଆଶାରେ କ୍ଷୀରସମୁଦ୍ର ମନ୍ଥନ କଲ ବେଳେ ସମୁଦ୍ରରୁ ବାହାରିଥିଲେ ଦେବୀ ଲକ୍ଷ୍ମୀ । ଜହ୍ନ ମଧ୍ୟ ସମୁଦ୍ରରୁ ସେତିକିବେଳେ ବାହାରିଥିଲେ । ଲକ୍ଷ୍ମୀ ଦିବ୍ୟ ଜନନୀଙ୍କର ଏକ ରୂପ । ଜହ୍ନ ତାଙ୍କ ସହ ସମୁଦ୍ରରୁ ବାହାରିଥିବାରୁ ତାଙ୍କ ଭାଇ । ଅତଏବ ସେ ଆମ ମାମୁଁ । ଏହାହିଁ ସବୁଠୁ ଗ୍ରହଣଯୋଗ୍ୟ ବ୍ୟାଖ୍ୟା ।

## ଏଚ. ଶାହ, ଠାଣା ( ମହାରାଷ୍ଟ୍ର )

ପ୍ରଶ୍ନ : ଇନ୍ଦ୍ରଧନୁ ବାସ୍ତବରେ କ'ଣ ?

ଉତ୍ତର : ସୂର୍ଯ୍ୟ କିରଣରେ ରହିଛି ସାତ ରଙ୍ଗ । [ସେଥିପାଇଁ] ସୂର୍ଯ୍ୟଙ୍କ ରଥରେ ସାତଟି ଅଶ୍ୱ ଥିବାର କୁହାଯାଏ । ଚିତ୍ରକରମାନେ ସାତ ଅଶ୍ୱକୁ ସାତରଙ୍ଗରେ ଚିତ୍ରଣ କରନ୍ତି ।

ବର୍ଷାବିନ୍ଦୁ ଉପରେ ସୂର୍ଯ୍ୟକିରଣର ପ୍ରତିଫଳନ *(Reflection)* ଏବଂ ପ୍ରତିସରଣ *(Refraction)* ଦ୍ୱାରା ସୂର୍ଯ୍ୟର ବିପରୀତ ଦିଗରେ ଇନ୍ଦ୍ରଧନୁ ଦେଖାଦିଏ । ଅବଶ୍ୟ ଆଖିକୁ ସାତୋଗୋଟିଯାକ ରଙ୍ଗ ଦେଖାଯାଏ ନାହିଁ ।

## ଅପଲଭ୍ୟ ନାଗରାଜ ଶର୍ମା, ପିଲେରୁ (ଆନ୍ଧ୍ର)

ପ୍ରଶ୍ନ : ପ୍ରଶ୍ନୋତ୍ତର ବିଭାଗ କ'ଣ 'ଜହ୍ନମାମୁଁ'ର ସବୁ ସଂସ୍କରଣରେ ରହିବ ?

ଉତ୍ତର : ଜହ୍ନମାମୁଁର ଆନ୍ତର୍ଜାତିକ ଇଂରାଜୀ ସଂସ୍କରଣ *(Chandamama)*ରେ ଏ ବିଭାଗ ପୂର୍ବରୁହିଁ ରହିଥିଲା । ଏଣିକି ଅନ୍ୟାନ୍ୟ ସଂସ୍କରଣରେ ମଧ୍ୟ ରହିବ ।




[୩] (ଲବ୍ଧ ପ୍ରଣାଶ)

ବାନରର ପାଖରୁ ଭର୍ତ୍ସନା ଶୁଣି କୁମ୍ଭୀର ଘାବରିଲା, ଥରେ ଛଳନା ଦ୍ୱାରା ବାନରକୁ ଭୁଲାଇବାକୁ ଚେଷ୍ଟା କରିଯାଉ । ସେ ତେଣୁ ଗଛ ପାଖକୁ ଲାଗିଯାଇ କଣ୍ଠସ୍ୱର ବଡ଼ ମଧୁର କରି କହିଲା, "ମାଙ୍କଡ଼ ଭାଇ ! ତୁମେ ଥଟ୍ଟାକୁ ସତ ବୋଲି ବିଶ୍ୱାସ କଲ କି ? ତୁମଭଳି ବୁଦ୍ଧି-ମାନ୍ ଲୋକ ଏପରି କରିବା ତ ଶୋଭା ପାଏ ନାହିଁ ! କଲିଜା ଯେ ଜଣକ ଦେହରୁ ଅଲଗା ହୋଇ ରହି ପାରେ ନାହିଁ, ଏତକ ବୁଝିଲା ଭଳି ସାଧାରଣ ଜ୍ଞାନ କ'ଣ ମୋର ନାହିଁ ? ତାଛଡ଼ା କୌଣସି ସ୍ତ୍ରୀ କେବେବେଳେ ହେଲେ ସ୍ୱାମୀର ମିତ୍ରକୁ ବିନାଶ କରିବାକୁ ଚାହିଁ ପାରେ ? ତୁମ ନୂଆବୋଉ ଗମ୍ଭୀର ଆଗ୍ରହରେ ଆମକୁ ଅପେକ୍ଷା କରିଥିବେ । ତୁମକୁ କେତେ ପ୍ରକାର ସେ ଅଭ୍ୟର୍ଥନା କରିବେ, ସେକଥା ଅଙ୍ଗେ ନ ନଭେଇଲେ କଳ୍ପନା କରି ପାରିବ ନାହିଁ । ଚାଲ ଆଉ ବିଳମ୍ବ କର ନାହିଁ ।"

"ଫେର୍ ବକ୍ ବକ୍ ହେଉଛ, ବଦ୍‌ମାସ୍ ! ତୁ ସିନା ମୂର୍ଖ ! କିନ୍ତୁ ମୁଁ ଶାସ୍ତ୍ର, ନୀତିକଥା, କିମ୍ବ-ଦନ୍ତୀ ଇତ୍ୟାଦି କିଛି କିଛି ଜାଣେ । ପ୍ରାଚୀନ କାଳରେ ଗଙ୍ଗଦତ୍ତ କହିଥିଲା କି କ୍ଷୁଧାର୍ତ୍ତ ନକରି ପାରିଲା ଭଳି ପାପ ନାହିଁ କି ଦୁର୍ବଳ ଭିତରେ ଦୟା ବୋଲି କିଛି ନାହିଁ । ସେ କଥା ମୁଁ କ'ଣ ଭୁଲିଯିବି ? ଥରେ ବୋକାମି କରି ତୋ ପିଠିରେ ବସିଥିଲି ବୋଲି ପୁଣି ତା'ର ପୁନରାବୃତ୍ତି କରିବି, ସେ ଆଶା କରନା ।" ବାନର କହିଲା ।

"ଗଙ୍ଗଦତ୍ତ କଥା କ'ଣ ଗପିଲ, ଶୁଣିବା !" କୁମ୍ଭୀର ଅନୁରୋଧ କଲା ।

ବାନର ସେଇଠୁ ଗପିଲା :

ବହୁ ପୂର୍ବ କାଳର କଥା । ଗୋଟାଏ କୂଅରେ

ବେଙ୍ଗ-ରଜାର ବୁଦ୍ଧି



କହି ବେଙ୍ଗରଜା ଯଥାଶୀଘ୍ର ଯାଇ ସାପଗାତ ପାଖରେ ପହଞ୍ଚିଲା ।

"ପ୍ରିୟଦର୍ଶନ ! ବିଳ ବାହାରକୁ ଆସିଲ ।" ସେ ଗାତ ମୁହଁ ପାଖରେ ଥାଇ ପାଟିକଲା ।

ଗାତ ଭିତରେ ଥାଇ ସାପ ଶୁଣିଲା : ଏ କଣ୍ଠସ୍ୱର କୌଣସି ସାପର ନୁହେଁ । ସାପ ଛଡ଼ା ସାପ ସହ ଆଉ କେହି ବନ୍ଧୁତା କରିବାକୁ କସ୍ମିନ୍‌କାଳେ ଆସନ୍ତି ନାହିଁ । ହୁଏତ ଇଏ କୌଣସି ସାପଧରା । ମୁଁ ବାହାରିବା ମାତ୍ରେ ଗଦ ସାହାଯ୍ୟରେ ମୋତେ ଜବଦ କରିବ । ନହେଲେ କୌଣସି ବୈଦ୍ୟ । ମୋ ବିଷ ବାହାର କରିନେବା ମାନସରେ ଆସିଛି ।

ସେ ତେଣୁ ସତର୍କ ହୋଇ ପଚାରିଲା, "ତୁମେ କିଏ ?" "ମୁଁ ବେଙ୍ଗରଜା ଗଙ୍ଗଦତ୍ତ । ତୁମ ସହ ବନ୍ଧୁତା କରିବା ଉଦ୍ଦେଶ୍ୟରେ ଆସିଛି ।" ବେଙ୍ଗରଜା ଉତ୍ତର ଦେଲା ।

"ହଇହେ ବାବୁ ! ଏଇଟା କ'ଣ ବିଶ୍ୱାସ-ଯୋଗ୍ୟ କଥା ? ଖଡ଼ ଓ ନିଆଁ ଭିତରେ ବନ୍ଧୁତା ହୁଏ ? ଖାଦ୍ୟ ଓ ଖାଦକ ଭିତରେ ବନ୍ଧୁତା ହୁଏ ? ତେଣୁ ମିଛ କହି ମୋତେ ଭୁଲାଇ ପାରିବ ନାହିଁ । ସତ କୁହ ତୁମେ କିଏ ।" ସାପ ଟେକ୍‌ଟୋକ୍ କହିଲା ।

"ପ୍ରିୟଦର୍ଶନ ! ତୁମ ସନ୍ଦେହ ଯଥାର୍ଥ । ସାପ ଓ ବେଙ୍ଗ ଭିତରେ ବନ୍ଧୁତାର ଦୃଷ୍ଟାନ୍ତ ନାହିଁ ।

ରହୁଥାନ୍ତି ଅନେକ ବେଙ୍ଗ । ସେମାନଙ୍କ ରାଜାର ନାମ ଗଙ୍ଗଦତ୍ତ । ଥରେ ତା'ର କେତେକ କୁଟୁମ୍ବ ସହିତ ତାର ଝଗଡ଼ା ହେଲା । ବେଙ୍ଗରାଜା ସେଥିରେ ଅପମାନ ବୋଧ କରି କୁଟୁମ୍ବମାନଙ୍କ ଉପରେ କପରି ପ୍ରତିଶୋଧ ନେବ ସେଇ କଥା ଚିନ୍ତା କରି ପାଣିକଡ଼ା ଦଉଡ଼ି ସାହାଯ୍ୟରେ ବାହାରକୁ ଆସିଲା ଓ ଏଣେ ତେଣେ ଅନାଇଲା ।

ଅଦୂରରେ ଥିଲା ଗୋଟାଏ ସାପଗାତ । ସେଥିରେ ପ୍ରିୟଦର୍ଶନ ନାମକ ସାପ ରହୁଥିବାର ସେ ଜାଣିଥିଲା ।

"ଶତ୍ରୁର ବିନାଶ ଶତ୍ରୁ ଦ୍ୱାରା କରି ପାରିଲେ ମୁଁ ଯଥାର୍ଥ ବୁଦ୍ଧିର ପରିଚୟ ଦେବି ।" ଏହା



ତେବେ ମୁଁ ମୋ ଜ୍ଞାତି କୁଟୁମ୍ବଙ୍କ ଦ୍ୱାରା ଅପମାନିତ ହୋଇ ତୁମ ସହାୟତା ଲୋଡ଼ୁଛି । ମହାପୁରୁଷମାନେ କହିଛନ୍ତି, ସମୟ ବିଶେଷରେ ଶତ୍ରୁର ମଧ୍ୟ ସହାୟତା ଲୋଡ଼ାଯାଇପାରେ ।” ବେଙ୍ଗ ବୁଝାଇଦେଲା ।

“ତୁମ ଶତ୍ରୁ ରହିଛନ୍ତି କେଉଁଠାରେ ?” ସାପ ପଚାରିଲା ।

“ମୋହରି ପାଖରେ ସେମାନେ ରହନ୍ତି ।” ଉତ୍ତର ଦେଲା ବେଙ୍ଗ ।

“ତୁମେ ରୁହ କେଉଁଠି ? କୂଅ, ପୋଖରୀ ନା ହ୍ରଦରେ ?” ସାପ ପଚାରିଲା ।

“କୂଅରେ !” ବେଙ୍ଗ ଜଣାଇଲା ।

“ତେବେ ଯାଅ । ମୁଁ ପେଟ ଘୋଷାରି ଘୋଷାରି କୂଅ ଭିତରେ ପଶି ପାରିବି ନାହିଁ ।” ସାପ କହିଲା ।

“ଚିନ୍ତା କର ନାହିଁ । କୂଅ ଭିତରେ କିପରି ସହଜରେ ପଶିବ, ସେ ଉପାୟ ମୁଁ ଜାଣିଛି । କୂଅ ଭିତରେ ଗୋଟିଏ ଖୋପ ରହିଛି । ସେଇଠାରେ ତୁମେ ଆରାମରେ ରହିବ ଓ ମୋ ଶତ୍ରୁମାନଙ୍କୁ ଗୋଟା ଗୋଟା କରି ଖାଉଥିବ । ତୁମର କୌଣସି ଅସୁବିଧା ହେବ ନାହିଁ ।” ବେଙ୍ଗ ବୁଝାଇଦେଲା ।

ସାପ ଭାବିଲା : ମୋ ଉମର ବହୁତ ହେଲାଣି । ଆଜିକାଲି ତ ଏଣେତେଣେ ଦୌଡ଼ି ଶିକାର ଧରିବାକୁ ବଡ଼ କଷ୍ଟ ହେଉଛି । ଏ କୁଳାଙ୍ଗାର ମୋହରି ସୁଖର ବ୍ୟବସ୍ଥା କରିଦେଉଛି । ଚମତ୍କାର !

“ବେଶ୍, ଚାଲ, ବାଟ ଦେଖାଅ !” ସାପ କହିଲା ।

“ପ୍ରିୟଦର୍ଶନ ! ତୁମକୁ ବାଟ ଦେଖାଇ ନେଇଯିବି; ତୁମ ରହିବା, ଖାଇବାର ବ୍ୟବସ୍ଥା ବି କରିଦେବି । କିନ୍ତୁ ଗୋଟାଏ ସର୍ତ୍ତ । ତୁମେ ମୋ ନିଜ ଲୋକଙ୍କର ଅନିଷ୍ଟ କରିବ ନାହିଁ ।”

“ସେକଥା କହିବା ଦରକାର ? ତୁମେ ମୋର ଦୋସ୍ତ । ତୁମେ ଯାହାକୁ ଖାଇବାକୁ କହିବ, ତାକୁହିଁ କେବଳ ଖାଇବି । ଅନ୍ୟ

କାହାକୁ ଅନାଇବ କାହିଁକି ?" ସାପ କହିଲା ।

ବେଙ୍ଗ ଖୁସୀ ହୋଇ ବାଟ ଦେଖାଇଲା ଓ ଦଉଡ଼ି ସାହାଯ୍ୟରେ ଧୀରେ ଧୀରେ ସାପକୁ କୂଅ ଭିତରକୁ ନେଲା ।

ଖୋପ ଭିତରେ ରହି ସାପ ପ୍ରତିଦିନ ବେଙ୍ଗ-ରଜାର ଶତ୍ରୁଙ୍କ ଭିତରୁ ଗୋଟାଏ ଯୋଡ଼ାଏ ବେଙ୍ଗ ସବୁଦିନେ ଆହାର କରେ । କ୍ରମେ ବେଙ୍ଗରଜାର ଶତ୍ରୁକୁଳ ସମୂଳେ ଲୋପ ପାଇ-ଗଲା ।

"ଦୋସ୍ତ ! ତୁମ ସହାୟତା ପାଇଁ ଧନ୍ୟ-ବାଦ । ଏଥର ଦଉଡ଼ି ସାହାଯ୍ୟରେ ଉପରକୁ ଯାଇ ତୁମ ବିଲ ଠାବ କରିନିଅ ।" ବେଙ୍ଗରଜା ସାପକୁ କହିଲା ।

"ଗଙ୍ଗଦତ୍ତ ! ତୁମ ମୁହଁରୁ ଏଭଳି ଅନ୍ୟାୟ କଥା ମୁଁ ଆଶା କରି ନ ଥିଲି । ମୋ ବିଲ କ'ଣ ଏ ଯାଏ ମୋର ହୋଇ ରହିଥିବ ? ହୁଏତ ପୋତି ହୋଇଯିବଣି; ନଚେତ୍ ଅନ୍ୟ ସାପ-ଟାଏ ତାକୁ ଅକ୍ତିଆର କରିବଣି । ମୁଁ ଏଇଠି ରହିବି । ଏଣିକି ତୁମ ନିଜ ଲୋକଙ୍କ ଭିତରୁ ମୋତେ ସବୁଦିନେ ଜଣେ କରି ଖାଇବାକୁ ଦିଅ ।" ସାପ କହିଲା ।

ବେଙ୍ଗରଜା ମୁଣ୍ଡରେ ଚଡ଼କ ପଡ଼ିଲା । ସାପକୁ ସେଠାକୁ ଆଣି ସେ କେଡ଼େ ଭୁଲ କରିଛି, ବର୍ତ୍ତ-ମାନ ସେକଥା ବୁଝିଲା । ସାପ ପ୍ରସ୍ତାବରେ ଅସମ୍ମତ ହେଲେ ସାପ ଯାହାକୁ ଇଚ୍ଛା ତାହାକୁ ଧରି ଖାଇଯିବ ବୋଲି ବୁଝି ସେ ଅଗତ୍ୟା ନିଜ ଅନୁଗତମାନଙ୍କ ଭିତରୁ ଜଣ ଜଣ କରି ତାକୁ ସମର୍ପିବାକୁ ଲାଗିଲା ।

ସାପ କିନ୍ତୁ ଲୁଚିଇ ଲୁଚିଇ ଅଧିକା ବେଙ୍ଗ ବି ଖାଇ ଦେଉଥାଏ । ମଇଳା ଲୁଗା ପିନ୍ଧିଥିବା ଲୋକ ଯେପରି ଯେଉଁଠାରେ ଇଚ୍ଛା ସେଇଠାରେ ବସିପାରେ, ମାନ ବିସର୍ଜନ ଦେଇଥିବା ଲୋକ ମଧ୍ୟ ଯେ କୌଣସି ପ୍ରକାର ଅତ୍ୟାଚାର କରି-ପାରେ ।





# ଭଲ୍ଲୁକ ତାନ୍ତ୍ରିକ

[୩]

[ରାଜ୍ୟ ସୀମାନ୍ତରେ ରହୁଥିବା ପ୍ରଜାମାନଙ୍କୁ ଦସ୍ୟୁମାନଙ୍କ କବଳରୁ ରକ୍ଷା କରି ରତ୍ନବର୍ମା ରାଜା ଦ୍ୱାରା ପୁରସ୍କୃତ ହେବା ପରିବର୍ତ୍ତେ ମୃତ୍ୟୁ ଦଣ୍ଡରେ ଦଣ୍ଡିତ ହେଲା । ସିପାହିମାନେ ତାକୁ ବଣ ଭିତରକୁ ନେଇଗଲେ । ସେଠାରେ ଘାତକ ହାତରୁ ପରଶୁ ଛଡ଼ାଇନେଇ ରତ୍ନବର୍ମା ସିପାହି-ସର୍ଦ୍ଦାରକୁ ମାରି-ଦେଲା । ସେତିକିବେଳେ କିଏ ଜଣେ ଚିତ୍କାର କଲା, "ଆଦି ଭଲ୍ଲୁକ !"]

"ଆଦି ଭଲ୍ଲୁକ !" ବୋଲି ରଡ଼ି ଶୁଣିବା ମାତ୍ରେ ଅଶ୍ୱାରୋହୀ ସିପାହିମାନେ ସ୍ତବ୍ଧ ହୋଇ ଅନାଇଲେ । ରତ୍ନବର୍ମା ଘୋଡ଼ାରୁ ତଳକୁ ଡେଇଁପଡ଼ିଲା । ଅଶ୍ୱାରୋହୀ-ସର୍ଦ୍ଦାରକୁ ସେ ପୂର୍ବରୁ ନିଜ ତରବାରିଟି ଦେଇଦେଇଥିଲା । ଏଥର ସେଖଣ୍ଡି ଆଣି କୋଷରେ ରଖିଲା । ତା'ପରେ ଦେଖିଲା, ଜଳପ୍ରପାତ ନିକଟରେ ଠିଆ ହୋଇଛି ଏକ ଦୀର୍ଘକାୟ ବ୍ୟକ୍ତି ।

"ଏ ବ୍ୟକ୍ତି ନିଶ୍ଚେ ଜଣେ ତାନ୍ତ୍ରିକ !" ଏହା ଭାବି ରତ୍ନବର୍ମା ସେଠାରୁ ତତ୍‌କ୍ଷଣାତ୍ ପଳାଇ-ବାକୁ ଉଦ୍ୟତ ହେଲା । କିନ୍ତୁ ଭାବିଲା, ପଳାଇ-ବାର ଚେଷ୍ଟା କଲେ ଅଶ୍ୱାରୋହୀମାନେ ତାକୁ ରୋକିବେ ।

ସେ ଆଗନ୍ତୁକ ଆଡ଼କୁ ଚାହିଁଲା । ସଙ୍ଗେ



ସଙ୍ଗେ ଏ କଥା ମଧ୍ୟ ଲକ୍ଷ୍ୟ କଲା, ଅଶ୍ୱାରୋହୀ ସିପାହୀମାନେ ଭୟ ଓ ସମ୍ଭ୍ରମରେ ସେ ଆଗନ୍ତୁକ ଆଡ଼କୁ ଅନାଇ ରହିଛନ୍ତି । ଆଗନ୍ତୁକ ପ୍ରପାତ-ଧାର ପାରିହୋଇ ଏପଟକୁ ଆସିଲା । ସେ ଦିଶୁଥିଲା ଖୁବ୍ ବଳିଷ୍ଠ । ପିନ୍ଧିଥିଲା ଗୋଟାଏ ଭଲ୍ଲୂକ ଚମଡ଼ା । ହାତରେ ଧରିଥିଲା ଖଣ୍ଡିଏ ଶଙ୍ଖ ଦଣ୍ଡ । ସେ ଦଣ୍ଡର ଶୀର୍ଷଦେଶରେ ହୀରାରେ ଖୋଦେଇ ଭାଲୁମୁଣ୍ଡଟାଏ ଲାଗିଥାଏ ।

ରବିବର୍ମା ସେ ପର୍ଯ୍ୟନ୍ତ ପଳାଇଯିବା କଥା ଭାବୁଥାଏ । ସେ ଦେଖିଲା ସେ ଅଦ୍ଭୁତ ଲୋକଟି ପାଖକୁ ପାଖକୁ ଆସିବାର ଦେଖି ଅଶ୍ୱାରୋହୀମାନେ ତଥା ଘାତକଜଣକ ଭୟରେ ଥରୁଛନ୍ତି ।

“ମୁଁ ଯଦି ଆଦିଭଲ୍ଲୂକଙ୍କ ନାମ ଉଚ୍ଚାରଣ କରି ନ ଥାନ୍ତି, ତେବେ ଏଠାରେ ଆଜିର ଗୁଡ଼ାଏ ରକ୍ତପାତ ଘଟିଥାନ୍ତା । ମୋ ନାମ ଭଲ୍ଲୂକ ତାନ୍ତ୍ରିକ ।” ଭଲ୍ଲୂକବେଶୀ ଏହା କହି ରବିବର୍ମା ପାଖକୁ ଲାଗିଆସିଲା ।

ଆଖି ପଲକକରେ ରବିବର୍ମା ଡାହାଣ ହାତରେ ତରବାରି ବାହାର କରି ଓ ବାଁ ହାତରେ ତଳେ ପଡ଼ିଥିବା କୁଠାର ଉଠାଇନେଇ କହିଲା, “ମହାଶୟ ! ଆପଣ ନିଜ ପରିଚୟ ଦେଇଛନ୍ତି । ଧନ୍ୟବାଦ । ଆଉ ରକ୍ତପାତ କଥା ଯେ କହିଲେ, ସେ ସମ୍ଭାବନା ବର୍ତ୍ତମାନ ମଧ୍ୟ ଅଛି । ମୁଁ ବର୍ତ୍ତମାନ ପ୍ରସ୍ଥାନ କରିବାକୁ ଯାଉଛି । ମୋତେ ଯିଏ ବାଧା ଦେବ, ସିଏ ନିଶ୍ଚୟ ମରିବ ।” ଏହା କହି ରବିବର୍ମା ପଳାଇବାକୁ ବାହାରିଲା ।

ସମସ୍ତେ ନୀରବ ରହିଥାନ୍ତି । ଭଲ୍ଲୂକ ତାନ୍ତ୍ରିକ ପାଟି କରି କହିଲା, “ଶୁଣ ଯୁବକ ! ତୁମେ ସାହସୀ, ମାନୁଛି । ଟିକିଏ ରୁହ । ଏହାପରେ ସେ ନିଜ ମନ୍ତ୍ରଦଣ୍ଡ ମଇଁଷି ଉପରେ ଜଡ଼ବତ୍ ବସିଥିବା ଘାତକ ଦେହରେ ଛୁଆଁଇଦେଲା ଓ ପଚାରିଲା, “ତୁ ଏ ଜଙ୍ଗଲର ଗୋଟାଏ ପିଶାଚ, ନା ରାଜାଙ୍କ ଘାତକ ?”

“ହଜୁର ! ମୁଁ ପିଶାଚ ନୁହେଁ, ରାଜାଙ୍କ ପ୍ରଧାନ ଘାତକ । ରାଜା ଯାହାକୁ ମୃତ୍ୟୁଦଣ୍ଡ

ଦଅନ୍ତି, ତା' ମୁଣ୍ଡ କାଟିବା ମୋର କାମ ।" ଘାତକ ଉତ୍ତର ଦେଲା । ତାନ୍ତ୍ରିକର ବେଶ ଦେଖି ତା' ମଇଁଷି ଲମ୍ଫ ଦେବାକୁ ବସିଥାଏ । ସେ କୌଣସି ମତେ ତାକୁ ସମ୍ଭାଳିଥାଏ ।

ଭଲ୍ଲୂକ ତାନ୍ତ୍ରିକ ଅଶ୍ୱାରୋହୀ-ସର୍ଦ୍ଦାରର ମୃତ-ଦେହ ଆଡ଼କୁ ଦୃଷ୍ଟିପାତ କରି ଘାତକକୁ ପଚାରିଲା, "ଜଣେ ଦଣ୍ଡିତ ଅପରାଧୀ ବର୍ତ୍ତମାନ ଜଣେ ରାଜ କର୍ମଚାରୀଙ୍କୁ ବଧ କରି ପଳାଇବାକୁ ବସିଛି । ତୁମେ ତା'ର କି ପ୍ରତିକାର କରୁଛ ?"

"ହଜୁର ! ମୁଁ ନିରସ୍ତ୍ର ଥାଇ କରିବି କ'ଣ ? ମୋ ଅସ୍ତ୍ରକୁ ରବିବର୍ମା ଜବର୍ଦସ୍ତ ଛଡ଼ାଇ ନେଇଛି ।" ଘାତକ କାକୁସ୍ଥ କଣ୍ଠରେ କହିଲା ।

"ଆଚ୍ଛା ! ଅସ୍ତ୍ର ଫେରିପାଇଲେ ତୁମେ ନିଜ ବୀରତ୍ୱର ପରିଚୟ ଦେବ ପରା ! ବେଶ୍ ! ନିଅ ତୁମ ପରଶୁ । ଏଥର ମୋର ପଥ ରୋଧ କରିବାର ଚେଷ୍ଟା କର !" ଏହା କହି ରବିବର୍ମା ଘାତକ ଆଡ଼କୁ ପରଶୁ ବଢ଼ାଇ ଧରିଲା ।

କିନ୍ତୁ ଘାତକ ସଙ୍ଗେସଙ୍ଗେ ନିଜ ମୁଖା ଖୋଲି ତଳେ ଫୋପାଡ଼ିଦେଇ କହିଲା, "ରବି-ବର୍ମା ! ତୁମେ ମହାନ୍ ବୀର । ମୁଁ ଭୈରବଙ୍କ ନାମରେ କହୁଛି, ମୋ ଗର୍ବ ଖର୍ବ ହୋଇଛି ।"

"ଗର୍ବ ଯିବା ସଙ୍ଗେ ସଙ୍ଗେ ତୁମ ନିଶା ବି ଯାଇଛି । ଏଥର ମୋ ରାସ୍ତାରୁ ହଟିଯାଅ ।" ଏହା କହି ରବିବର୍ମା ଅଶ୍ୱାରୋହୀମାନଙ୍କ ଆଗକୁ ଯାଇ



ପଚାରିଲା, "ତୁମମାନଙ୍କ ସିଦ୍ଧାନ୍ତ କଣ ? ନିଜ ସର୍ଦ୍ଦାରର ହାଲ୍ ଦେଖିଲ ତ ?"

"ଆଜ୍ଞା ! ପ୍ରାଣଦଣ୍ଡ ଯେଉଁ ଦୁଇଜଣ କାର୍ଯ୍ୟ-କାରୀ କରିବା କଥା, ତହିଁରୁ ଜଣେ ମୃତ; ଆଉ ଜଣେ ଅସ୍ତ୍ର ତ୍ୟାଗ କଲେଣି । ଆଉ ଗୁରୁ ଆମେ ଆପଣଙ୍କ ପ୍ରତିରୋଧ କରି ପ୍ରାଣ ଦେବୁଁ କାହିଁକି ? ଆମେ ଯାଇ ରାଜାଙ୍କୁ ସବୁ ଜଣାଇଦେଲେ ଆମ କାମ ଛୁଟି ।" ଅଶ୍ୱାରୋହୀମାନେ ଏକ ସ୍ୱରରେ କହିଲେ ।

"ତୁମେମାନେ ବୁଦ୍ଧିମାନ୍ ଭଳି କଥା କହୁଛ ।" ଏହା କହି ରବିବର୍ମା ଘୋଡ଼ା ଛୁଟାଇବାକୁ ଯାଉଛି, ଭଲ୍ଲୂକ ତାନ୍ତ୍ରିକ ଆଗକୁ ଆସି ତା'



ଘୋଡ଼ାର ଲଗାମ ଧରିନେଇ କହିଲା, ଜୟ ଭଲ୍ଲୂକପାଦଗୁରୁ ! ଆମର ଯେପରି ଲୋକ ଲୋଡ଼ା ଥିଲେ, ସେପରି ଲୋକ ମିଳିଗଲେ ।” ତା’ପରେ ରବିବର୍ମାଙ୍କୁ ଲକ୍ଷ୍ୟ କରି ସେ କହିଲା, “ରବିବର୍ମା ! ତୁମେ ଭୁଲିଯାଉଛ ଯେ ଏଠାରେ ମହାନ୍ ମନ୍ତ୍ରବେତ୍ତା ଭଲ୍ଲୂକ ତାନ୍ତ୍ରିକ ଉପସ୍ଥିତ ରହିଛନ୍ତି ।”

ରବିବର୍ମା ପିଲାବେଳରୁ ତାନ୍ତ୍ରିକ, ମାନ୍ତ୍ରିକ ଇତ୍ୟାଦି ପ୍ରତି କୌଣସି ସମ୍ମାନ ଦେଖାଉ ନ ଥିଲା । ନିଜ ଗାଁ ପାଖରେ ସେଭଳି ଗୁଣିଆ, ଓଝା କମ୍ ନ ଥିଲେ । ଭଲ୍ଲୂକ ତାନ୍ତ୍ରିକ ତା’ପ୍ରତି ଅସମ୍ମାନ ଦେଖାଉଛି ବୋଲି ସେ ତାଙ୍କୁ ସୂଚକ ସ୍ୱରରେ କହିଲା, “ଓଃ, ତୁମ ନାମ ଭଲ୍ଲୂକ ତାନ୍ତ୍ରିକ ପରା ! ଟିକିଏ ଆଗରୁ ତୁମେ ଆଉ କୌଣସି ଭଲ୍ଲୂକର ନାମ ଉଚ୍ଚାରଣ କଲ । ସିଏ କିଏ ? ଭଲ୍ଲୂକ ଭଲ୍ଲୂକ ଭିତରେ ପାର୍ଥକ୍ୟ ଜାଣିବା ମୋ ପକ୍ଷରେ ସହଜ ହେଉ ନାହିଁ ।”

ଏପରି ଥଟ୍ଟାରେ ଭଲ୍ଲୂକ ତାନ୍ତ୍ରିକ କିନ୍ତୁ ଅପମାନ ବୋଧ କଲା ନାହିଁ । ସେ ଅଳ୍ପ ହସି କହିଲା, ମୋ ଗୁରୁଙ୍କ ନାମ ଭଲ୍ଲୂକପାଦ । ମୋ ନାମ ଭଲ୍ଲୂକ ତାନ୍ତ୍ରିକ । ତୁମେ ଶୀଘ୍ର ବହୁତ ବିସ୍ମୟକର କଥା ଦେଖିବ । ସାମାନ୍ୟ ଭଲ୍ଲୂକ ନାମ ଦୁଇଟିକୁ ନେଇ ଆଶ୍ଚର୍ଯ୍ୟ ହେଲେ ଚଳିବ ?”

“ଘରୁ ବାହାରିବାଠୁ କେତେ ଆଶ୍ଚର୍ଯ୍ୟଜନକ କଥା ଦେଖିଲିଣି । ଗାଁରେ ପହଞ୍ଚି ଗୃହବାସ କରି ରହିବା ବର୍ତ୍ତମାନ ମୋର ଏକମାତ୍ର ଉଦ୍ଦେଶ୍ୟ ।” ଏହା କହି ରବିବର୍ମା ପରଶୁଖଣ୍ଡିକ ଘାତକ ଆଡ଼କୁ ଫୋପାଡ଼ିଦେଇ ନିଜ ଗାଁ ଉଦ୍ଦେଶ୍ୟରେ ଘୋଡ଼ା ଛୁଟାଇଦେଲା ।

ଘୋଡ଼ା ଛୁଟିବାକୁ ଆରମ୍ଭ କରିଛି, ଭଲ୍ଲୂକ ତାନ୍ତ୍ରିକ ଉଚ୍ଚ କଣ୍ଠରେ କହିଲା, “ରବିବର୍ମା ! ଅଟକିଯାଅ ! ତୁମ ଆଗରେ କିଏ ଦେଖୁଛ ନା ନାହିଁ ?”

ଚେତାବନୀ ପାଇ ରବିବର୍ମା ଆଗକୁ ଦୃଷ୍ଟିପାତ

କଲ । ଗୋଟାଏ ବିଶାଳ ବୃକ୍ଷ ସେପଟରୁ ତିନିଜଣ ଅଶ୍ୱାରୋହୀ ଛୁଟିଆସୁଥିଲେ । ମଝିଜଣକ ରେଶମି ଲୁଗା ଓ ବିରାଟ ପଗଡ଼ି ପିନ୍ଧିଥିଲା । ତା' ଦୁଇପାଖରେ ଥିଲେ ଦୁଇଜଣ ବର୍ମଧାରୀ ଦେହରକ୍ଷୀ । ସେମାନେ ଧରିଥିଲେ ତରବାରୀ ଓ ଢାଲ ।



ରବିବର୍ମା ଲଗାମ ଟାଣି ଘୋଡ଼ା ଅଟକାଇ ରଖିଲା । ରେଶମି ବସ୍ତ୍ରଧାରୀ ଲୋକଟି ରବିବର୍ମା ଆଡ଼କୁ ଅଙ୍ଗୁଳି ଦେଖାଇ ଘାତକକୁ ପଚାରିଲେ, "କହୋ ଘାତକ ମହାଶୟ ! ମହାରାଜ ପରା ଏ ଲୋକକୁ ମୃତ୍ୟୁଦଣ୍ଡ ଦେଇ ବଣକୁ ପଠା-ଇଲେ ? କିନ୍ତୁ ତୁମେ କରୁଛ କ'ଣ ?"

ଘାତକ ଥରହର ହୋଇ କ'ଣ କହିବ ବୋଲି ଯାଉଛି, ସେତିକବେଳେ ଭଲ୍ଲୁକ ତାନ୍ତ୍ରିକ ଘାତକ ଆଗକୁ ଯାଇ ପ୍ରଶ୍ନ କଲା, "ତୁମେ ମହାରାଜା ଜିତକେତୁଙ୍କ ପ୍ରଧାନମନ୍ତ୍ରୀ ଜୀବଗୁପ୍ତ ଟି ?"

ମନ୍ତ୍ରୀ ଦେଖିଲେ ଯେ ଲୋକଟି ଉଦ୍ଧତ ଢଙ୍ଗରେ କଥା କହୁଛି । ସେ ଆଖି ଲାଲ୍ କରି କ୍ରୋଧପୂର୍ଣ୍ଣ କଣ୍ଠରେ କହିଲେ, "ସିପାହିମାନେ, ଦେଖୁଛ କ'ଣ ? ଏ ଲୋକଟାକୁ ଉଠାଇ ଦୂରକୁ ଫୋପାଡ଼ିଦେଲ !

ମନ୍ତ୍ରୀଙ୍କ ଦେହରକ୍ଷୀମାନେ ନିଜ ନିଜ ତର-ବାରୀ ବାହାର କରିବାକୁ ଯାଇ ଭଲ୍ଲୁକ ତାନ୍ତ୍ରିକ ହାତରେ ଥିବା ମନ୍ତ୍ରଦଣ୍ଡ ଦେଖି ଚମକିପଡ଼ି ରହିଗଲେ । ସେମାନଙ୍କ ଘୋଡ଼ାମାନେ ପଛକୁ ଘୁଞ୍ଚିଯିବାକୁ ଲାଗିଲେ ।

ମନ୍ତ୍ରୀ ଆଶ୍ଚର୍ଯ୍ୟ ହୋଇ ଦେହରକ୍ଷୀମାନଙ୍କ ଆଡ଼କୁ ଅନାଇଲେ ଓ ପଚାରିଲେ, "କଥା କ'ଣ ? ବ୍ୟାଧକୁ ଦେଖିଲେ ହରିଣର ଅବସ୍ଥା ଯାହା ହୁଏ, ତୁମେମାନେ ସେହିପରି ହେଉଛ କାହିଁକି ?"

"ହଜୁର ! ଏ ବୈରାଗୀ ହାତରେ ଥିବା ଦଣ୍ଡ ଦେଖୁଛନ୍ତି ? ସେ ଦଣ୍ଡ ଅଗରେ ଥିବା ଖପୁରୀକୁ ଦେଖନ୍ତୁ । ସେଥିରୁ ଟିକିଏ ଆଗରୁ ଅଗ୍ନିସ୍ଫୁଲିଙ୍ଗ ବାହାରିଥିଲା !" ଦେହରକ୍ଷୀମାନେ



ଭୟ-ଚକିତ ହୋଇ ଉତ୍ତର ଦେଲେ ।

ମନ୍ତ୍ରୀ ଜୀବଗୁପ୍ତ ଭଲ୍ଲୂକ ତାନ୍ତ୍ରିକ ହାତରେ ଥିବା ମନ୍ତ୍ରଦଣ୍ଡକୁ ଲକ୍ଷ୍ୟ କରି ଦେଖିଲେ ଓ ପରିହାସ ଭରା ସ୍ୱରରେ କହିଲେ, "ହେଇଟି ବୈରାଗୀ ! ତୁମକୁ ଦେଖି, ତୁମ କଥା ଶୁଣି ମନେ ହୁଏ ତୁମେ ଭୀଷଣ ଉଦ୍ଧତ । କ'ଣ, ସତରେ ତୁମେ କିଛି ମନ୍ତ୍ର ତନ୍ତ୍ର ଜାଣ ?"

ଭଲ୍ଲୂକ ତାନ୍ତ୍ରିକର ଆଖି କ୍ରୋଧରେ ଝଟକି ଉଠିଲା । ସେ କହିଲା, "ଉଦ୍ଧତ ମୁଁ ନୁହେଁ; ତୁମେ । ମୁଁ ଭଲ୍ଲୂକ ତାନ୍ତ୍ରିକ । ତୁମେ ମୋ ସହ ଯେପରି ବ୍ୟବହାର କରିବା କଥା, ତାହା କରୁନାହଁ ।" ଏହାପରେ ଭଲ୍ଲୂକ ତାନ୍ତ୍ରିକ "ଜୟ ଆଦି ଭଲ୍ଲୂକଙ୍କର ଜୟ !" ବୋଲି କହି ନିଜ ଦଣ୍ଡ ଗୋଟାଏ ଗଛ ଦେହରେ ଛୁଆଁଇ-ଦେଲା ।

ମନ୍ତ୍ରଦଣ୍ଡର ସ୍ପର୍ଶରେ ଗଛ ଭିତରୁ ଅଗ୍ନିକଣା ଛୁଟିକିଆସିଲା । ଧୁହୁଁ ଧୁହୁଁ ସାରାଗଛ ଜଳି-ଉଠିଲା । ମନ୍ତ୍ରୀଙ୍କ ଘୋଡ଼ା ପଛ ଦୁଇଗୋଡ଼ରେ ଠିଆ ହୋଇପଡ଼ି ଚିତ୍‌ପଟାଙ୍ଗ୍ ହେବା ଅବସ୍ଥାକୁ ଆସିଗଲା । ମନ୍ତ୍ରୀଙ୍କ ବର୍ମଧାରୀ ଦେହରକ୍ଷୀମାନେ ଆତଙ୍କରେ ବିକଳ ଦିଶୁଥାନ୍ତି ।

କେତେ ସମୟ ପର୍ଯ୍ୟନ୍ତ ସମସ୍ତେ ସ୍ତବ୍ଧ ହୋଇ ରହିଲେ । ନୀରବରେ ସେଯାଏ ସବୁକଥା ଦେଖୁଥିବା ରବିବର୍ମା ଭଲ୍ଲୂକ ତାନ୍ତ୍ରିକ ପାଖକୁ ଘୋଡ଼ା ଛୁଟାଇ ଆଣି ତା'ପରେ ଘୋଡ଼ାରୁ ଓହ୍ଲାଇପଡ଼ି କହିଲା, "ବୁଝିଲି, ତୁମେ ସାଧାରଣ ଗୁଣିଆ ନୁହଁ, ମହା ତାନ୍ତ୍ରିକ । ତୁମେ ଏ ଦୁଷ୍ଟ ମନ୍ତ୍ରୀକୁ ଯେମିତି ଜବଦ କଲ, ଏହାର ଅବିବେକୀ ରାଜାକୁ ସେମିତି ଜବଦ କରି ସେ ଯେମିତି ନ୍ୟାୟପୂର୍ଣ୍ଣ ଶାସନ କରିବ ସେ କଥା ଶିଖାଇ ଦିଅନ୍ତ କି !"

"ସାବାସ୍, ଯୁବକ । ତୁମେ କେବଳ ସାହସୀ ନୁହଁ, ବୁଦ୍ଧିମାନ୍ ମଧ୍ୟ । ତୁମେ ମୋ ମନକଥା କହିଦେଇଛ ! ଭଲ୍ଲୂକ ତାନ୍ତ୍ରିକ ତା'ପରେ ମନ୍ତ୍ରୀକୁ ଅନାଇ କହିଲା, "ଶୁଣ ମନ୍ତ୍ରୀ ! ତୁମେ ମୋ ପରିଚୟ ପାଇଲ । ଏଥର କୁହ, ଏଠାରେ

ଆଦେଶ ଦେବା ଲୋକ କିଏ ହେବ, ତୁମେ ନା ମୁଁ !"

ମନ୍ତ୍ରୀ ଜୀବଗୁପ୍ତ ସେପର୍ଯ୍ୟନ୍ତ ସେ ଜଳନ୍ତା ଗଛ ଆଡ଼କୁ ଅନାଇ ରହିଥିଲେ ଓ ସେଠାକୁ ଆସି କେଉଁ ଭୁଲ କରିଛି, ସେହି କଥା ଭାବୁଥିଲେ । ତାଙ୍କୁ ମୌନ ରହିବାର ଦେଖି ଭଲ୍ଲୂକ ତାନ୍ତ୍ରିକ ନିଜ ପ୍ରଶ୍ନର ପୁନରାବୃତ୍ତି କଲା ।

ମନ୍ତ୍ରୀ ଥରି ଥରି କହିଲେ, "ମହାଶୟ ! ଆପଣଙ୍କ ଶକ୍ତିର ପରିଚୟ ବିଶେଷ ପାଇଲି । ଆପଣ ଖାଲି ଏ ବଣ ଭିତରେ କାହିଁକି, ରାଜ-ପ୍ରାସାଦକୁ ଯାଇ ସ୍ୱୟଂ ରାଜାଙ୍କୁ ଆଦେଶ ଦେବାକୁ ମଧ୍ୟ ହକ୍‌ଦାର !"



ଭଲ୍ଲୂକ ତାନ୍ତ୍ରିକ ନିଜ ମନ୍ତ୍ରଦଣ୍ଡ ଉଦ୍ୟତ କରି ଉଚ୍ଚ କଣ୍ଠରେ କହିଲା, "ତୁମେ ସମସ୍ତେ ସାବ-ଧାନ ହେବେ ମୋ ଆଦେଶ ଶୁଣ ଏବଂ ମୁଁ ଯେପରି କହୁଛି ଠିକ୍‌ନିଖି ଭାବରେ ମୋ କଥା ମାନି କାର୍ଯ୍ୟ କର !"

ଏହାପରେ ସେ ଘାତକକୁ କହିଲା, "ତୁମେ ମଣିଷର ମୁଣ୍ଡକୁ ତା' ଦେହରୁ ଅଲଗା କରି-ଦେଇ ପାରିବା ସଙ୍ଗେସଙ୍ଗେ ଦରକାର ପଡ଼ିଲେ ପୁଣି ମୁଣ୍ଡକୁ ଦେହ ସହ ମିଳାଇ କରିଦେବା ବିଦ୍ୟା ମଧ୍ୟ ଜାଣିଥିବ । ମୃତ ଅଶ୍ୱାରୋହୀ ସର୍ଦ୍ଦାର ମୁଣ୍ଡକୁ ତା'ର ମୃତଦେହ ସହିତ ମିଳାଇ କରି ତା' ଘୋଡ଼ା ଉପରେ ବସାଇ ଦଉଡ଼ିରେ ବାନ୍ଧିଦିଅ, ଯେପରି ଲାଗିବ ଜଣେ ଜୀବନ୍ତ ଲୋକ ଘୋଡ଼ାରେ ବସିଛି ।"

ଘାତକ ଆଦେଶ ଅନୁସାରେ ସର୍ଦ୍ଦାରର ଛିନ୍ନ ମୁଣ୍ଡ ତା' ଦେହ ସହ ମିଳେଇ କରି ଘୋଡ଼ା ଉପରେ ବସାଇ ବାନ୍ଧିଦେଲା । କିନ୍ତୁ ସେ ତରବରରେ ମୁଣ୍ଡଟିକୁ ଦେହର ପିଠିପଟକୁ ମିଳେଇ କରି ବାନ୍ଧିଦେଇଥିଲା । ତେଣୁ ମନେ ହେଲା, ଘୋଡ଼ାରେ ଯିଏ ବସିଛି, ସିଏ ପଛକୁ ମୁହଁକରି ବସିଛି !

ତା'ର ସେ ଭୁଲ ଦେଖି କେବଳ ମନ୍ତ୍ରୀ ଜୀବଗୁପ୍ତଙ୍କୁ ଛାଡ଼ି ଅନ୍ୟ ସମସ୍ତେ ହସିଉଠିଲେ । ଭଲ୍ଲୂକ ତାନ୍ତ୍ରିକ ମନ୍ତ୍ରୀ ଆଡ଼କୁ ଚାହିଁ କହିଲା,

"ଶୁଣ ! ତୁମ ଘୋଡ଼ାରେ ଘାତକ ବସିବ । ତୁମେ ବସିବ ଘାତକର ମଇଁଷି ଉପରେ । ହେଲା ?"

ଜୀବଗୁପ୍ତ ବିନା ବାକ୍ୟବ୍ୟୟରେ ମଇଁଷି ଉପରେ ବସିଲା । ଘାତକ ଯାଇ ମନ୍ତ୍ରୀର ଘୋଡ଼ା ଉପରେ ସବାର ହେଲା । ଭଲ୍ଲୂକ ତାନ୍ତ୍ରିକ ସମସ୍ତଙ୍କୁ ରାଜପ୍ରାସାଦ ଉଦ୍ଦେଶ୍ୟରେ ଚାଲିବାକୁ ନିର୍ଦ୍ଦେଶ ଦେଲା ।

ଏସବୁ ଘଟଣା ଦେଖି ରବିବର୍ମା ମନେ ମନେ ଭାବୁଥାଏ, ଏତେବେଳକେ ଏ ସଇତାନ ମନ୍ତ୍ରୀ ଜବଦ ହୋଇପାରିଛି । ତାଙ୍କଳା ଭାବରେ ସେ ମନ୍ତ୍ରୀକୁ କିଛି କହିପକାଇବାକୁ ଉଦ୍ୟତ ହୋଇ ପୁଣି ରହିଗଲା ଓ ଭାବିଲା, ଏବେ ମଧ୍ୟ ମୋର ଗନ୍ତବ୍ୟ ପଥ ନିର୍ମଳ ନୁହେଁ । ଏ ଭଣ୍ଡ ତାନ୍ତ୍ରିକ ବି କିଛି ନା କିଛି ଅସୁବିଧାରେ ପକାଇପାରେ ! ତେଣୁ ଆଉ ଅଧିକ କାଳ ବିଳମ୍ବ ନ କରି ଏଠାରୁ ଗ୍ରାମକୁ ଫେରି ପଳାଇବାହିଁ ମଙ୍ଗଳ ।

ଏହାପରେ ମନ୍ତ୍ରୀର ଦୁରବସ୍ଥା ଦେଖି ଖୁସୀ ହୋଇଯାଇ ରବିବର୍ମା ଭଲ୍ଲୂକ ତାନ୍ତ୍ରିକକୁ କହିଲା, "ଆମର ଏ ଶୋଭାଯାତ୍ରା ଦେଖି ନଗରର ଲୋକେ ନିଶ୍ଚୟ ଉତ୍ଫୁଲ୍ଲ ହେବେ । ଏଥର ମୁଁ ଗାଁ ଉଦ୍ଦେଶ୍ୟରେ ଚାଲିଲି ।"

ଏହା କହି ରବିବର୍ମା ନିଜ ଘୋଡ଼ା ଭିନ୍ନ ଦିଗରେ ନେବାକୁ ଉଦ୍ୟତ ହେଲା । କିନ୍ତୁ ଭଲ୍ଲୂକ ତାନ୍ତ୍ରିକ ନିଜ ମନ୍ତ୍ରଦଣ୍ଡ ଉଠାଇ କହିଲା, "ରବିବର୍ମା ! ତୁମେ କ'ଣ ମୋ ଆଦେଶ ଶୁଣି-ପାରି ନାହଁ, ନା ଶୁଣି ମଧ୍ୟ ପାଳନ କର-ବାକୁ ଖାତିର କରୁନାହଁ ?"

"ଆଦେଶ ? ସେ ପୁଣି କିପରି କଥା ? ମୋତେ ଆଦେଶ ଦେବାର ଏଠାରେ କାହାର ଅଧିକାର ଅଛି ?" ଏହା କହି ଘୋଡ଼ାରେ ସବାର ହୋଇଥିବା ରବିବର୍ମା ତତ୍‌କ୍ଷଣାତ୍ ତରବାରି ବାହାର କଲା ।

(କ୍ରମଶଃ)






## ମନ୍ତ୍ରୀଙ୍କ ପରାମର୍ଶ

ରାଜା ବିକ୍ରମାର୍କ ପୁନର୍ବାର ବୃକ୍ଷଟି ପାଖକୁ ଲେଉଟି ଆସିଲେ । ସେତେବେଳେ ରାତି ଗମ୍ଭୀର । ବାରିପାତ ସଙ୍ଗେ ସଙ୍ଗେ ଘନ ଘନ ବିଜୁଳି ମାରୁଥାଏ । ବିଜୁଳି ଆଲୁଅରେ ଦିଶୁଥାଏ ଭୀଷଣ ଆକୃତିମାନ । ପୁଣି ଶୁଭୁଥାଏ ଅଶରୀରୀ-ମାନଙ୍କ ଅଟ୍ଟହାସ୍ୟ । ମଧ୍ୟେ ମଧ୍ୟେ ଭୀଷଣ ବଜ୍ର-ପାତରେ ସାରା ମୁଲକ ଥରିଉଠୁଥାଏ । ଶୁଭୁଥାଏ ଶ୍ୱାନମାନଙ୍କର ଆର୍ତ୍ତରଡ଼ି ।

ରାଜା କିନ୍ତୁ ବିଚଳିତ ନ ହୋଇ ବୃକ୍ଷାରୋହଣ କଲେ ଓ ବୃକ୍ଷଡାଳରୁ ଶବଟିକୁ ଉତାରି ଆଣି ତାକୁ କାନ୍ଧରେ ପକାଇ ଜନହୀନ ଶ୍ମଶାନ ଅତି-କ୍ରମ କରିବାକୁ ଆରମ୍ଭ କରିବାମାତ୍ରେ ଶବସ୍ଥିତ ବେତାଳ କହିଲା, "ରାଜା ! ତୁମେ ଯାହା କରୁଛ, ତାହା ଅବଶ୍ୟ ତୁମ ବିଜ୍ଞ ମନ୍ତ୍ରୀମାନଙ୍କ ପରାମର୍ଶ କ୍ରମେ କରୁଥିବ । କିନ୍ତୁ ଥରେ ଥରେ

**ବେତାଳ କଥା**



ବିଜ୍ଞ ମନ୍ତ୍ରୀମାନେ ମଧ୍ୟ ଭୁଲ ପରାମର୍ଶ ଦେଇ-ପାରନ୍ତି । ଧର ମଣିକେତୁଙ୍କ ମନ୍ତ୍ରୀଙ୍କ କଥା । କହୁଛି ସେ କାହାଣୀ ଶୁଣ । ଶୁଣିଲେ ଶ୍ରମଭାର ଲଘୁ ମନେ ହେବ ।"

ବେତାଳ କହିଲା : ମଣିପୁରର ରାଜା ମଣି-କେତୁଙ୍କର ଥିଲା ଗୋଟିଏ ବୋଲି ସନ୍ତାନ । ସିଏ ହେଲା କନ୍ୟା ମଣିମଞ୍ଜରୀ । ପିତାମାତାଙ୍କଠାରୁ ଅତ୍ୟଧିକ ଆଦର ପାଇ ସେ ପିଲା ବେଳରୁ ଭୀଷଣ କ୍ରୋଧୀ ଓ ଜିଦଖୋର ହୋଇଯାଇ-ଥାଏ । କଥା କଥାକେ ଯାହା ଉପରେ ଇଚ୍ଛା ତାହା ଉପରେ ଚିଡ଼ୁଥାଏ; ଜିନିଷପତ୍ର ଫୋପାଡ଼ି ଭାଙ୍ଗୁଥାଏ । ସେ କେତେବେଳେ କାହା ଉପରେ ରାଗିବ, ସେ କଥା ବୁଝି ନ ପାରି ସମସ୍ତେ ତାଙ୍କୁ ଶଙ୍କି ରହିଥାନ୍ତି ।

ରାଜକୁମାରୀଙ୍କ ସ୍ୱଭାବ କଥା ଚାରିଆଡ଼େ ପ୍ରଚାର ହୋଇଯାଇଥାଏ । ଯେତେବେଳେ ସେ ବିବାହଯୋଗ୍ୟା ହେଲେ, ସେତେବେଳେ ରାଜା ମହା ଭାବନାରେ ପଡ଼ିଲେ । ରାଜକୁମାରୀଙ୍କୁ ଯିଏ ବିଭା ହେବ, ସେ ଭବିଷ୍ୟତରେ ରାଜା ମଧ୍ୟ ହେବ । କିନ୍ତୁ ରାଜ୍ୟର ସମ୍ଭ୍ରାନ୍ତ ତଥା ସୁଯୋଗ୍ୟ ଯୁବକମାନଙ୍କ ଭିତରୁ କେହି ରାଜକୁମାରୀଙ୍କୁ ବିଭା ହେବାକୁ ମଙ୍ଗିବେ ନାହିଁ । ଯେଉଁ ଯୁବକ ମଙ୍ଗିବ, ସିଏ ହୁଏତ ରାଜ୍ୟ ଶାସନ ପାଇଁ ଯୋଗ୍ୟ ହୋଇ ନ ଥିବ ।

ବହୁଦିନ ପର୍ଯ୍ୟନ୍ତ ରାଜାଙ୍କର ଦୃଢ଼ ବିଶ୍ୱାସ ଥିଲା ଯେ ରାଜକୁମାରୀଙ୍କୁ ବିଭାହୋଇ ଭବି-ଷ୍ୟତରେ ରାଜା ହେବା ମାନସରେ ରାଜ୍ୟର ଅନେକ ସମ୍ଭ୍ରାନ୍ତ ଯୁବକ ଆଗଭର ହେବେ । କିନ୍ତୁ ଦିନ ଗଡ଼ିଯିବା ସଙ୍ଗେସଙ୍ଗେ ରାଜାଙ୍କର ସେ ବିଶ୍ୱାସ ତୁଟିଗଲା । କେହି ଆପଣାଛାଏଁ ଆଗଭର ହେବା ତ ଦୂରର କଥା, ବରଂ ରାଜାଙ୍କ ତରଫରୁ ଯେଉଁ ଯୁବକମାନଙ୍କୁ ବିବାହ ପ୍ରସ୍ତାବ ଦିଆଗଲା, ସେମାନେ କୌଣସି ନା କୌଣସି ଆଳରେ ରାଜକୁମାରୀଙ୍କୁ ବିବାହ କରିବା ପାଇଁ ନିଜ ନିଜର ଅସାମର୍ଥ୍ୟ ପ୍ରକାଶ କଲେ ।

ଅବଶ୍ୟ ଏଭଳି କ୍ରୋଧୀ ଓ କ୍ରୂର ପ୍ରକୃତିର ଯୁବକ ଥିଲେ, ଯେଉଁମାନେ ରାଜକୁମାରୀଙ୍କୁ ବିବାହ କରି ତାଙ୍କୁ ଜବଦ କରି ପାରନ୍ତେ, କିନ୍ତୁ ସେଭଳି ଯୁବକ ରାଜ୍ୟ ପକ୍ଷରେ ହୁଏତ ବିପଜ୍ଜନକ ହେବ । ଏଣେ ରାଜକୁମାରୀଙ୍କ ସହ ଧୈର୍ଯ୍ୟ ଧରି ବ୍ୟବହାର କରୁଥିବ ଓ ତାଙ୍କୁ ଧୀରେ ଧୀରେ ବାଟକୁ ଆଣିବାକୁ ଚେଷ୍ଟା କରୁଥିବ, ପୁଣି ଅନ୍ୟ ଦିଗରେ ରାଜ୍ୟକୁ ସୁଶାସନ ଦେଇ ପାରିବ, ଏଭଳି ବର କାହୁଁ ମିଳିବେ- ତାହାହିଁ ହେଲା ଘୋର ସମସ୍ୟା ।

ରାଜା ବହୁତ ଭାବିଚିନ୍ତି ଦେଖିଲେ, ତାଙ୍କର ପଡ଼ୋଶୀ ରାଜ୍ୟମାନଙ୍କର ରାଜକୁମାରମାନଙ୍କ ଭିତରେ ଜୟ ଓ ବିଜୟ ନାମକ ଦୁଇ ତରୁଣ ସବୁଠୁ ଭଲ ବରପାତ୍ର । ଦିନେ ଘଟଣାକ୍ରମେ ବିଜୟ ଆସି ମଣିକେତୁଙ୍କ ଆତିଥ୍ୟ ଗ୍ରହଣ କରିଥାନ୍ତି । ବିଜୟ ଯେପରି ବୁଦ୍ଧିମାନ୍, ସେହିପରି ତେଜସ୍ୱୀ । ରାଜା ତାଙ୍କୁ ଏକାନ୍ତରେ କହିଲେ, "ମୋ ଝିଅକୁ ଯିଏ ବଶ ହବ, ସେ ଏ ରାଜ୍ୟ ପାଇବ । କିନ୍ତୁ ମୋ ଝିଅ ଭୀଷଣ ବଦ୍‌ରାଗୀ । ତାକୁ କିଏ ବଶ ହେବ, ସେଇଟା ହେଲା ପ୍ରଶ୍ନ ।"

"ଆପଣ ଗୁହିଁଲେ ମୁଁ ବଶ ହେବ ।" ବିଜୟ କହିଲେ । ପରଦିନ ବିଜୟ ବିଦାୟ ନେଲେ । କେତେ ଦିନ ପରେ ଜୟ ଆସି ରାଜାଙ୍କ ଆତିଥ୍ୟ ଗ୍ରହଣ କଲେ । ସେ ଯେପରି ଧୀର ସ୍ଥିର, ସେହିପରି ନମ୍ର । ରାଜା ତାଙ୍କୁ ମଧ୍ୟ ଏକା କଥା କହିଲେ । ଜୟ ଉତ୍ତର ଦେଲେ, "ମହାରାଜ !





ଯାହାର କୌଣସି ଦୁର୍ବଳତା ଥାଏ, ସେହିଁ କ୍ରୋଧୀ ହୋଇଥାଏ । କ୍ରୋଧୀମାନଙ୍କ ପ୍ରତି ମୋର୍ ଦୟା ହୁଏ । ଆପଣ ଚାହିଁଲେ ମୁଁ ରାଜକୁମାରୀଙ୍କୁ ବିବାହ କରିବି ଓ ତାଙ୍କ ଦୁର୍ବଳତା ଦୂର କରିବାକୁ ଚେଷ୍ଟା କରିବି ।" ପରଦିନ ଜୟ ବିଦାୟ ନେଲେ ।

ରାଜା ତାଙ୍କ ମନ୍ତ୍ରୀଙ୍କୁ ଜୟ ଓ ବିଜୟ ଉଭୟଙ୍କ କଥା କହିସାରି ପଚାରିଲେ, "କାହାକୁ କନ୍ୟା ଦେବା ? ଆପଣଙ୍କ ପରାମର୍ଶ କ'ଣ ?"

ମନ୍ତ୍ରୀ କହିଲେ, "ମହାରାଜ ! ମୋର ପରାମର୍ଶ ହେଲା, ଏ ବିଷୟରେ ଆପଣ ମୋ ପରାମର୍ଶ ଲୋଡ଼ନ୍ତୁ ନାହିଁ, ଏ କ୍ଷେତ୍ରରେ ନିଜ କନ୍ୟାର ଭବିଷ୍ୟତ ନିଜେ ନିରୂପଣ କରିବା ଉଚିତ ।"

"ମନ୍ତ୍ରୀ ! ତୁମକୁ ପରାମର୍ଶ ଦେବାକୁହିଁ ହେବ । ଖାଲି ମୋ କନ୍ୟାର ଭବିଷ୍ୟତ ନୁହେଁ, ରାଜ୍ୟର ଭବିଷ୍ୟତ ଏଥିରେ ଜଡ଼ିତ ।" ରାଜା କହିଲେ ।

"ବେଶ୍ । ତେବେ ଜୟ ସହ ବିବାହ ଦିଅନ୍ତୁ ।" ମନ୍ତ୍ରୀ କହିଲେ । ରାଜା ଅବିଳମ୍ବେ ବିବାହ ସମ୍ପନ୍ନ କଲେ ଓ ଜୟ ଆସି ମଣିପୁର ରାଜପ୍ରାସାଦରେ ରହିଲେ ।

ଦିନ ବିତିଗଲା । କିନ୍ତୁ ଦେଖାଗଲା, ବର କନ୍ୟାଙ୍କ ଭିତରେ ସଦ୍‌ଭାବ ପ୍ରତିଷ୍ଠାର କୌଣସି ଲକ୍ଷଣ ନାହିଁ । ଜୟ ସବୁ ସହିଯାନ୍ତି । ରାଜକୁମାରୀ ତାଙ୍କୁ ଅଯଥା ଗଞ୍ଜଣା ଦିଅନ୍ତି । ଜୟ ଅଧିକାଂଶ ସମୟ ରାଜ୍ୟର ଭଲ ମନ୍ଦ ବୁଝିବାରେ ବ୍ୟସ୍ତ କରନ୍ତି ।

ରାଜା ଦିନେ ମନ୍ତ୍ରୀଙ୍କୁ କହିଲେ, "ମନ୍ତ୍ରୀବର ! ତୁମେ ବଡ଼ ଭୁଲ ପରାମର୍ଶ ଦେଇଥିଲ !"

ମନ୍ତ୍ରୀ ଗମ୍ଭୀର ହୋଇ କହିଲେ, "ମହାରାଜ ! ମୁଁ ଠିକ୍ ପରାମର୍ଶ ଦେଇଥିଲି । ଆପଣଙ୍କର ଯଦି ପୂର୍ବ କଥାବାର୍ତ୍ତା ମନେ ଥିବ, ତେବେ ଏ କଥାର ସତ୍ୟତା ବୁଝିପାରିବେ ।"

ରାଜା ନୀରବରେ ସବୁ ମନେ ପକାଇଲେ ଓ ଚୁପ୍ ହୋଇଗଲେ ।

ବେତାଳ ଟିକିଏ ରହି ପ୍ରଶ୍ନ କଲା ! "ରାଜା ! ମନ୍ତ୍ରୀ ଭୁଲ୍ ପରାମର୍ଶ ଦେଇ ମଧ୍ୟ ତାହା ଠିକ୍

ବୋଲି କିପରି ଦାବି କଲେ ? କ୍ରୋଧର ଉତ୍ସ ଯେ ଦୁର୍ବଳତା, ଜୟ ତାହା ଜାଣି ମଧ୍ୟ ରାଜକୁମାରୀଙ୍କୁ କାହିଁକି ସୁଧାରି ପାରିଲେ ନାହିଁ ? ଯଦି ପାରିବ, ତେବେ ଏ ଦୁଇଟି ପ୍ରଶ୍ନର ଉତ୍ତର ଦିଅ । ଯଦି ଉତ୍ତର ଜାଣିକରି ମଧ୍ୟ ଚୁପ୍ ରହିବ, ତେବେ ତୁମ ମସ୍ତକ ସ୍କନ୍ଧଚ୍ୟୁତ ହେବ । ଜାଣିରଖ !"

ମୁହୂର୍ତ୍ତେ ମଧ୍ୟ ବିଳମ୍ବ ନ କରି ବିକ୍ରମାର୍କ ଉତ୍ତର ଦେଲେ, "ମନ୍ତ୍ରୀଙ୍କ କଥା ଯଥାର୍ଥ । ରାଜାଙ୍କୁ ସେ ପ୍ରଥମେ ଏଇ ପରାମର୍ଶ ଦେଇଥିଲେ; ରାଜକୁମାରୀଙ୍କ ବିବାହ ବିଷୟରେ ତାଙ୍କ ପରାମର୍ଶ ଲୋଡ଼ା ନ ହେଉ ! କାରଣ ସେ ରାଜକନ୍ୟାଙ୍କ ସ୍ୱାର୍ଥଠାରୁ ରାଜ୍ୟର ସ୍ୱାର୍ଥକୁ ବଡ଼ କରି ଦେଖିବେ ଓ ଯାହା ଦ୍ୱାରା ଭଲ ରାଜ୍ୟ ଶାସନ ହେବ, ତାକୁହିଁ ବାଛିବେ । ସେଥି ପାଇଁ ସେ କହିଥିଲେ ନିଜ ଝିଅର ଭବିଷ୍ୟତ ରାଜା, ନିଜେ ଠିକ୍ କରନ୍ତୁ । କିନ୍ତୁ ରାଜା ଯେତେବେଳେ ରାଜ୍ୟର ଭବିଷ୍ୟତ କଥା ଉଠାଇଲେ, ସେତେବେଳେ ମନ୍ତ୍ରୀ ରାଜ୍ୟର ଭବିଷ୍ୟତ ଦୃଷ୍ଟିରୁ ଜୟକୁ ବାଛିଲେ ! ବିଜୟ ନିଜ ବ୍ୟକ୍ତିତ୍ୱ ଦ୍ୱାରା ରାଜକୁମାରୀଙ୍କ ବ୍ୟବହାର ବଦଳାଇ ପାରିଥାନ୍ତେ; କିନ୍ତୁ ରାଜ୍ୟର ମଙ୍ଗଳ ପାଇଁ ଜୟ ଉପଯୁକ୍ତ ବୋଲି ମନ୍ତ୍ରୀ ଜାଣିଥିଲେ ।"

"ଜୟ ନିଜର ଜ୍ଞାନ ସତ୍ତ୍ୱେ ରାଜକୁମାରୀଙ୍କୁ ବଦଳାଇ ନ ପାରିବାର କାରଣ, ରାଜକୁମାରୀଙ୍କ ଭିତରେ ବଦଳିବାର ସ୍ପୃହା ନ ଥିଲା । ମଣିଷ ନିଜେ ନିଜ ଦୁର୍ବଳତା ବିଷୟରେ ସଚେତନ ହୋଇ ସେଥିରୁ ମୁକୁଳିବା ସକାଶେ ଯେଯାଏ ନ ଚାହିଁବ, ସେଯାଏ କୌଣସି ମହାପୁରୁଷ ମଧ୍ୟ ତାକୁ ବଦଳାଇ ପାରିବେ ନାହିଁ ।"

ରାଜାଙ୍କ ମୌନ ଭଙ୍ଗ ହେବା ମାତ୍ରେ ଶବ ସହ ବେତାଳ ତାଙ୍କ କାନ୍ଧରୁ ଖସି ପୁନରାୟ ବୃକ୍ଷ ଡାଳରେ ଯାଇ ଝୁଲିପଡ଼ିଲା ।

(କଳ୍ପିତ)



# ଯଥା ରାଜା ତଥା ରାଜ-ପ୍ରତିନିଧି

ଥରେ ରଙ୍ଗପୁର ଗାଁରେ ନିଆଁ ଲାଗି କେବଳ ସ୍ଥାନୀୟ ରାଜ-ପ୍ରତିନିଧିଙ୍କ ଘରକୁ ଛାଡ଼ି ବାକି ସବୁ ଘର ପୋଡ଼ିଗଲା । ପରଦିନ ଲୋକେ ପ୍ରତିନିଧିଙ୍କୁ ଅନୁରୋଧ କଲେ କି ସେ ରାଜାଙ୍କୁ କହି ସମସ୍ତଙ୍କ ପାଇଁ ସାହାଯ୍ୟର ବ୍ୟବସ୍ଥା କରନ୍ତୁ ।

"ଅସ୍ତୁ ଧର । ମୋ ଘର ବି ପୋଡ଼ିଯାଉ । ତାହାହେଲେ ଏକାଥରେ ଯାଇ ମୋ ପାଇଁ ମଧ୍ୟ ସାହାଯ୍ୟ ଲୋଡ଼ିବି ।" ପ୍ରତିନିଧି ଉତ୍ତର ଦେଲେ ।

ସେହି ରାତିରେ ରାଜ-ପ୍ରତିନିଧିଙ୍କ ଘର ବି ପୋଡ଼ିଗଲା—କାରଣ ଯାହା ହେଉ ନା କାହିଁକି ।

ରାଜ-ପ୍ରତିନିଧି ସବୁ ଗ୍ରାମବାସୀଙ୍କୁ ଧରି ରାଜାଙ୍କ ଆଗରେ ହାଜର ହେଲେ ଓ ସାହାଯ୍ୟ ପାଇଁ ନିବେଦନ କଲେ ।

"ଅସ୍ତୁ ଧର । ଆଉ ଦୁଇ ଚାରିଖଣ୍ଡି ଗାଁ ପୋଡ଼ିଯାଉ । ତା'ପରେ ଆମ୍ଭେ ଗାଁ ପିଛା କେତେ ସାହାଯ୍ୟ ଦେବା ତାହା କଳନା କରିବା ଓ ବ୍ୟବସ୍ଥା କରିବା ।" ରାଜା ଉଦାର ଭାବରେ ଉତ୍ତର ଦେଲେ ।





# ଉଚିତ ବିଚାର

ଜୀବନଦାସର ଗୋଟାଏ ବଢ଼ିଆ ଗାଈ ଥିଲା ।

ସେ ଦୈନିକ ଦଶସେର ଦୁଧ ଦେଉଥାଏ । ଗ୍ରାମପଞ୍ଚାୟତର ସଭାପତି ଭୈରବ ସିଂହର ନଜର ପଡ଼ୁଥାଏ ସେ ଗାଈ ଉପରେ । ସେ ଗାଈଟି କିଣିନେବାକୁ ଚାହିଁଲା । କିନ୍ତୁ ଜୀବନ ନାସ୍ତି କରିଦେଲା ।

ଜୀବନ ଗାଈଟିର ବହୁତ ଯତ୍ନ ନେଉଥାଏ । ସେ ଯେପରି ନିଜ ପରିବାରର ଅନ୍ତର୍ଭୁକ୍ତ ତାହାପ୍ରତି ସେହିପରି ବ୍ୟବହାର କରୁଥାଏ । ନିଜର ଖଣ୍ଡିଏ ଜମିରେ ପ୍ରଚୁର ଘାସ ବଢ଼ୁଥାଏ । ଜୀବନ ଗାଈକୁ ସେ ଘାସ ଖୁଆଇବା ସଙ୍ଗେସଙ୍ଗେ ପ୍ରତିବେଶୀମାନଙ୍କ ଅନୁମତି ନେଇ ସେମାନଙ୍କ ଜମିରୁ ମଧ୍ୟ ଘାସ ଆଣି ଖୁଆଉଥାଏ ।'

କିନ୍ତୁ ହଠାତ୍ ଜୀବନର ଝିଅବାହାଘର ଠିକ୍ ହୋଇଯିବାରୁ ଗାଈ ବିକିବା ଛଡ଼ା ତା'ର ଅନ୍ୟ ଗତି ନ ଥିଲା । ନିଜ ଗାଁରେ ଭୈରବ ସିଂହ ଛଡ଼ା ସେ ଗାଈ କିଣିବା ଭଳି ଟଙ୍କା-ବାଲା ଲୋକ ଆଉ ନ ଥିଲେ । କିନ୍ତୁ ଭୈରବ ସିଂହ କଦାପି ଉଚିତ ମୂଲ୍ୟ ଦେବ ନାହିଁ । ତେଣୁ ଜୀବନ ଗାଈକୁ ଦୂର ହାଟକୁ ନେଇଯିବାକୁ ସ୍ଥିର କଲା ।

ସେ ଗାଈ ଧରି ବାଟ ଚାଲୁଥାଏ, ତାକୁ ଦେଖିଦେଲା ଭୈରବ ସିଂହର ପୁଅ ନଟ ସିଂହ । ଗାଈଟି ପାଇବାକୁ ବାପାର ଇଚ୍ଛା ଥିଲା ବୋଲି ସେ ଜାଣିଥିଲା । କୌଣସି ମତେ ଗାଈଟି କିଣି ବାପାକୁ ଖୁସୀ କରିବ ବୋଲି ନଟ ସିଂହ ମଧ୍ୟ ହାଟକୁ ଚାଲିଲା ।

ସନ୍ଧ୍ୟାବେଳେ ପଞ୍ଚାୟତ ବସିଛି, ସେତିକିବେଳେ ଜଣେ ଗ୍ରାମବାସୀ ସେହି ଗାଈଟି ଧରି ସେଠାରେ ପହଞ୍ଚି କାନ୍ଦି କାନ୍ଦି ହୋଇ କହିଲା,

"ଏ ଗାଈ ମୋ କ୍ଷେତରେ ପଶି ମୋ ବର୍ଷକର ମେହେନତକୁ ନଷ୍ଟ କରିଦେଇଛି । ସବୁ ଖାଇଦେଇଛି ।"

"ଏ ଗାଈ କାହାର ?" ଜଣେ କିଏ ପଚାରିଲା । ଆଉଜଣେ ପାଖକୁ ଯାଇ ଗାଈକୁ ଭଲଭାବରେ ଲକ୍ଷ୍ୟ କରିସାରି କହିଲା, "ଏଇଟି ଜୀବନ ଦାସର ଗାଈ । ବହୁତ ଭଲ ଗାଈ । ଜୀବନ ଦାସ ଏହାକୁ ଏପରି ଭାବରେ ଖୋଲା ଛାଡ଼ିଦେବା ବାସ୍ତବିକ ବହୁତ ଆଶ୍ଚର୍ଯ୍ୟ କଥା ।"

ଭୈରବ ସିଂହର ତ ବହୁତ ରାଗ ଥିଲା ଜୀବନଦାସ ଉପରେ । ସେ ଉତ୍ତେଜିତ ହୋଇ କହିଲା, "ଏ କ୍ଷେତ୍ରରେ ଗାଈର ମାଲିକ ଉପରେ କଡ଼ା ଜୋରିମାନା ହେବା ଦରକାର । ଯା'ର ଫସଲ ନଷ୍ଟ ହେଲା, ସେ ପୂରା କ୍ଷତିପୂରଣ ପାଇବା ସଙ୍ଗେସଙ୍ଗେ ଗାଁ ପାଣ୍ଠିକୁ ମଧ୍ୟ ଟଙ୍କା ଯିବା ଦରକାର । ତାହାହେଲେ ଯାଇ ଅନ୍ୟମାନେ ଚେତିବେ । କେହି ନିଜ ଗୋରୁଗାଈଙ୍କୁ ବିନା ଆକଟରେ ଛାଡ଼ିଦେବେ ନାହିଁ ।"

ସଭାପତି ଭୈରବ ସିଂହଙ୍କ କଥାରେ ପଞ୍ଚାୟତ ଏକମତ ହେଲା ।

"ଦୁଇହଜାର ଟଙ୍କା ଜୋରିମାନାହିଁ ଉଚିତ ବିଚାର ହେବ । ମୋ ଗାଈ ହୋଇଥିଲେ ବି ମୁଁ ଏତିକି ଜୋରିମାନା ଧାର୍ଯ୍ୟ କରନ୍ତି !" ଭୈରବ ସିଂହ ଘୋଷଣା କଲା ।

ସେତିକିବେଳେ ତା' ପୁଅ ନଟ ସିଂହ ଅଣନିଃଶ୍ୱାସୀ ହୋଇ ସେଠାରେ ପହଞ୍ଚି କହିଲା, "ଆରେ ! ଗାଈଟି ଆସି ଏଠାରେ ! ମୁଁ ହାଟରୁ ଏହାକୁ କିଣି ଆସୁଥିବାବେଳେ ଗାଁ ମୁଣ୍ଡରେ ଖସି ପଳାଇଲା । ଖୋଜି ଖୋଜି ହାଲିଆ ହେଲିଣି !"

ଭୈରବ ସିଂହ ମୁଣ୍ଡରେ ଯେପରି ଚଡ଼କ ପଡ଼ିଲା । କିନ୍ତୁ ଆଉ ଉପାୟ ନଥିଲା । ତାକୁ ଦୁଇହଜାର ଟଙ୍କା ଜୋରିମାନା ଦେଇଦେବାକୁହିଁ ପଡ଼ିଲା ।



# ଦସ୍ୟୁଦମନ

ବହୁ ଯୁଗ ତଳର କଥା । କଳିଙ୍ଗ ସୀମାନ୍ତରେ ଗୋଟିଏ ଡାକୁଦଳ ଭାରି ଉପଦ୍ରବ କରୁଥାନ୍ତି । ରାଜା ଡାକୁମାନଙ୍କୁ ଧରିବା ନିମନ୍ତେ ଅନେକ ଚେଷ୍ଟା କଲେ । ଶେଷରେ ଦିନେ ପ୍ରହରୀମାନେ ଡାକୁ-ଦଳରୁ ଗୋଟାଏ ଡାକୁକୁ କାବୁ କରି ଦରବାରକୁ ଆଣିଲେ ।

ରାଜା ତା' ପ୍ରତି କଠୋର ଦଣ୍ଡଦେବା ଶୁଣାଇବାକୁ ଯାଉଛନ୍ତି, ସେତିକିବେଳେ ମନ୍ତ୍ରୀ କହିଲେ, "ଛାମୁ ! ଏ ଡାକୁ ପ୍ରାଣଦଣ୍ଡ ପାଇବା ଉଚିତ । କିନ୍ତୁ ଏ ଥରକ ଏହାକୁ କ୍ଷମା ଦିଆଯାଉ । ମୋର ଆଶା, ଇଏ ନିଜକୁ ସଂଶୋଧନ କରି ଭଲ ନାଗରିକ ଭାବରେ ରହିବ ।"

ରାଜା ମନ୍ତ୍ରୀଙ୍କୁ ବହୁତ ଶ୍ରଦ୍ଧା କରୁଥିଲେ । ତେଣୁ କୁଣ୍ଠା ସତ୍ତ୍ୱେ ଡାକୁଟିକୁ ଛାଡ଼ିଦେଲେ ।

ପର ସପ୍ତାହରେହିଁ ମନ୍ତ୍ରୀ ସମଗ୍ର ଡାକୁଦଳକୁ ଆଣି ଦରବାରରେ ହାଜର କଲେ । ତହିଁ ଭିତରେ ସେ କ୍ଷମା ପାଇଥିବା ଲୋକ ବି ଥିଲା । କଥା ହେଲା, ଛାଡ଼ ପାଇ ସେ ନିଜ ଦଳ ପାଖକୁ ଗଲା । ମନ୍ତ୍ରୀଙ୍କ ନିର୍ଦ୍ଦେଶରେ ପ୍ରହରୀମାନେ ତାକୁ ଗୋପନରେ ଅନୁସରଣ କରି ଦଳର ଆଡ୍ଡା ଠାବ କଲେ । ତେଣିକି ପୁରା ଦଳ ଧରା ହେଲେ ।





# ମଣିଷତ୍ୱର ପରୀକ୍ଷା

ଏକ ଗାଁରେ କନକଦତ୍ତ ନାମରେ ଜଣେ ଧନିକ ଥାଏ । ଖଣ୍ଡମଣ୍ଡଳରେ ସେ ଥିଲା ସବୁଠାରୁ ବେଶୀ ଧନୀ । ତଥାପି ତା'ର ଲୋଭର ସୀମା ନ ଥାଏ । ସେ ନାନା ଆଳରେ ଲୋକଙ୍କୁ ଶୋଷଣ କରି ଆହୁରି ବେଶୀ ଧନ ସଞ୍ଚିବାରେ ଲାଗିଥାଏ ।

କିନ୍ତୁ କନକ ଦତ୍ତର ସ୍ତ୍ରୀ ସୁମତି ଥିଲା ଜଣେ ବିବେକବତୀ ଗୃହିଣୀ । ତା ସ୍ୱାମୀ ଦ୍ୱାରା ଅନ୍ୟମାନେ ନିପୀଡ଼ିତ ହେବାର ଦେଖି ସେ ବହୁତ ବ୍ୟଥା ଅନୁଭବ କରୁଥାଏ ଓ ବାରମ୍ବାର ସ୍ୱାମୀକୁ କହୁଥାଏ, "ଆମର ଆଉ ଅଧିକ ଟଙ୍କା ଦରକାର କ'ଣ ? କର୍ମଫଳ ତ ପୁଣି ଭୋଗିବାକୁ ପଡ଼ିବ !"

କନକଦତ୍ତ କହୁଥାଏ, "ଧନ ଅର୍ଜି ନ ପାରିଲେ ମଣିଷପଣିଆ କେଉଁ ଠାରେ ?"

ହଠାତ୍ ସେ ଅଞ୍ଚଳରେ ଜଣେ ଯୋଗୀ ଆବିର୍ଭୂତ ହେଲେ । ସେ ନଈ କୂଳରେ ଖଣ୍ଡିଏ ସ୍ଥାନ ନେଇ ସେଥିରେ ନିଜ ଆଶ୍ରମ ତିଆରି କଲେ ଓ ଗୋଟିଏ ବଗିଚା ମଧ୍ୟ ଉପୁଜାଇଲେ । ବଗିଚାର ଗୋଟାଏ କୋଣରେ ସେ ଗୋଟାଏ ଆମ୍ବ ଗଛ ଲଗାଇଥାନ୍ତି । ପ୍ରତିଦିନ ତହିଁ ଉପରେ ମନ୍ତ୍ର ପଢ଼ି ନିଜେ ପାଣି ଢାଳନ୍ତି ।

ଯେତେବେଳେ ସେ ଆମ୍ବ ଗଛରେ ପ୍ରଥମଥର ପାଇଁ ଫଳ ହେଲା, ଦେଖାଗଲା ସେ ଫଳରେ ରହିଛି ଗୋଟାଏ ଅଦ୍ଭୁତ ଗୁଣ । ସେ ଗଛ ମୂଳକୁ ଯାଇ ଯିଏ ସେଥିରୁ ଗୋଟାଏ ଆମ୍ବ ତୋଳି ଖାଇବ, ସେ କୌଣସି ମନୁଷ୍ୟେତର ପ୍ରାଣୀରେ ପରିଣତ ହୋଇଯିବ ।

କିଏ କେଉଁ ପ୍ରାଣୀର ରୂପ ପାଇବ, ତାହା ନିର୍ଭର କରେ ତାହାର ପ୍ରକୃତି ଉପରେ ।

ମୋହନଲାଲ

ତେବେ, ସେ ଗଛ ଠାରୁ ଟିକିଏ ଦୂରେଇ ଆସିଲେ ପ୍ରତ୍ୟେକେ ପୁଣି ନିଜ ମଣିଷ ରୂପ ଫେରି ପାଉଥିଲେ ।

ଏ ଅଦ୍ଭୁତ ଘଟଣା ଗାଁରେ ଗୃଞ୍ଜନ ସୃଷ୍ଟି କଲା । କନକଦତ୍ତ ଓ ସୁମତି ମଧ୍ୟ ସେ ଗଛ ପାଖରେ ଯାଇ ପହଞ୍ଚିଲେ । ସେଠାରେ ଅନେକ ଲୋକ ଜମା ହୋଇ ବିଚିତ୍ର ଦୃଶ୍ୟମାନ ଉପଭୋଗ କରୁଥାନ୍ତି ।

ଜଣେ ଅବସର ପ୍ରାପ୍ତ ସେନାପତି ଗଛ ମୂଳକୁ ଯାଇ ଆମ୍ବଟିଏ ଖାଇ ଗୃହ୍ନିଁ ଗୃହ୍ନିଁ ବାଘରେ ପରିଣତ ହେଲେ ଓ ଲୋକଙ୍କ ଉପରକୁ କୁଦିପଡ଼ିଲେ । କିନ୍ତୁ କୁଦିପଡ଼ି ସେ ପୁଣି ନିଜର ମଣିଷ ରୂପ ଫେରି ପାଇଥିବାର ଦେଖାଗଲା ।

ଗାଁର ଜଣେ ଶିକ୍ଷକ ଗୋଟିଏ ଦୁଧିଆଳି ଗାଈରେ, ଜଣେ ଜଣାଶୁଣା ଦୁଷ୍ଟ ଲୋକ ଗୋଟିଏ ନାଗ ସାପରେ ପରିଣତ ହେବାର ଦେଖାଗଲା । ଜଣେ ଖୋସାମୋଦିଆ ଗୋଟିଏ କୁକୁର ବନିଗଲା । ଆହୁରି ମଜା କଥା ହେଲା, ସବୁ ବେଳେ ଅନ୍ୟକୁ ଉପଦେଶ ଦେଇ ବୁଲୁଥିବା ଲୋକଟିଏ ଗୋଟିଏ ଗଧରେ ପରିଣତ ହେଲା ।

ଏହିପରି ଭାବରେ ସମସ୍ତେ କିଛି କିଛି ସମୟ ପାଇଁ ନିଜ ପ୍ରକୃତି ଅନୁରୂପ ପ୍ରାଣୀ ହୋଇଯାଉଥାନ୍ତି ।

କନକଦତ୍ତର ଖୁବ୍ ଇଚ୍ଛା ହେଉଥାଏ ନିଜେ କ'ଣ ତାହା ଜାଣିବା ପାଇଁ । କିନ୍ତୁ କାଳେ ଅନ୍ୟମାନଙ୍କ ଆଗରେ ଗଧ ବା ଘୁଷୁରି ବନିଯିବ, ସେହି ଭୟରେ ଗଛ ମୂଳକୁ ଗଲା ନାହିଁ ।

କିନ୍ତୁ କୌତୂହଳ ପ୍ରବଳ ହେବାରୁ ସେ ବାଡି



ଅଧରେ ଯାଇ ସେଠାରେ ପହଞ୍ଚିଲା । ସାଥିରେ ସୁମନ୍ତ ମଧ୍ୟ ଯାଇଥାଏ । ଦୁହେଁ ଦୁଇଟି ଫଳ ତୋଳି ଖାଇଲେ ।

ସୁମନ୍ତର କୌଣସି ପରିବର୍ତ୍ତନ ହେଲା ନାହିଁ । କିନ୍ତୁ ଚାହୁଁ ଚାହୁଁ କନକଦତ୍ତ ଗୋଟାଏ ଭୀଷଣାକୃତି ବ୍ରହ୍ମରାକ୍ଷସରେ ପରିଣତ ହେଲା ଓ "କ୍ଷୁଧା !" ବୋଲି ଚିତ୍କାର କରି ସୁମନ୍ତକୁ ଖାଇବାକୁ ଉଦ୍ୟତ ହେଲା । ସୁମନ୍ତ ଦୌଡ଼ିବାରୁ ସେ ମଧ୍ୟ ଦୌଡ଼ିଲା । ଉଭୟେ ଗଛଠାରୁ କେଇ ଗଜ ଆଗେଇ ଆସିବା ମାତ୍ରେ କନକଦତ୍ତ ମଣିଷରେ ପରିଣତ ହେଲା ଓ ସୁମନ୍ତକୁ ରୋକିବାକୁ ଚାହିଁଲା । କିନ୍ତୁ ସୁମନ୍ତ ତା' କଥା ଶୁଣିଲା ନାହିଁ । ସେ ଦୌଡ଼ି ଦୌଡ଼ି ଯାଇ ଘରେ ପହଞ୍ଚିଲା । କନକଦତ୍ତ ପହଞ୍ଚିବା ପରେ ସେ ତା ମୁଁହକୁ ଚାହିଁ ମଧ୍ୟ ପାରିଲା ନାହିଁ ।

କନକଦତ୍ତ ଆସି ଯୋଗୀଙ୍କୁ ସବୁ କଥା ଜଣାଇଲା । ଯୋଗୀ ନିଜେ ଯାଇ ସୁମନ୍ତକୁ ଦେଖା କଲେ ଓ କହିଲେ, "ଝିଅ ! ଅନାଇ ଦେଖ୍ ତୋ ସ୍ୱାମୀ ଭିତରେ ମଣିଷ । ଭିତର ପ୍ରବୃତ୍ତି ହେତୁ ସେ ମୁହୂର୍ତ୍ତକ ପାଇଁ ବ୍ରହ୍ମରାକ୍ଷସ ହୋଇ ଯାଇଥିଲା ସିନା, କିନ୍ତୁ ଆଉ ସେଭଳି ହେବାର ଆଶଙ୍କା ନାହିଁ । କାରଣ ମୁଁ ସେ ଯାଦୁ ଗଛକୁ କଟାଇ ଦେଇଛି ।"

ତା'ପରେ ଯୋଗୀ କନକଦତ୍ତକୁ କହିଲେ, "ଦେଖ ବାପା, ସବୁ ପ୍ରାଣୀ ଭିତରେ ମଣିଷ ଶ୍ରେଷ୍ଠ । ଶ୍ରେଷ୍ଠ ପ୍ରାଣୀ ହେବାର ସୁଯୋଗ ପାଇ ମଧ୍ୟ ତୁ ଭିତରେ ବ୍ରହ୍ମରାକ୍ଷସ ଭଳି ଲୋଭୀ ହୋଇ ରହିଛୁ କାହିଁକି ? ନିଜ ପ୍ରକୃତିକୁ ତ ଚିହ୍ନିଲୁ ? ଏଥର ମଣିଷ ଭଳି ମଣିଷ ହେବାର ଚେଷ୍ଟା କର ।"

କନକଦତ୍ତ ଭିତରେ ବାସ୍ତବିକ ବିପୁଳ ପରିବର୍ତ୍ତନ ଆସିଲା । ତେଣିକି ସେ ଲୋଭର ବଶବର୍ତ୍ତୀ ହୋଇ ଅନ୍ୟକୁ ଶୋଷଣ କରିବାରୁ ନିବୃତ୍ତ ହେଲା ।



# ବୈଠକୀ ବୁଦ୍ଧି !

ପଶୁମଙ୍ଗଳ ସମିତିର ଅଧ୍ୟକ୍ଷ ଯେତେଥର ସମିତିର ବୈଠକ ଡାକନ୍ତି, କେହି ଜଣେ ବୋଲି ସଭ୍ୟ ଆସନ୍ତି ନାହିଁ । ଥରେ ସେ ସଦସ୍ୟମାନଙ୍କୁ ଜଣାଇଲେ କ ଏଥର ଖୋଦ୍ ରାଜା ବୈଠକରେ ସଭାପତିତ୍ୱ କରିବେ । ତାହା ଶୁଣି ସବୁ ସଭ୍ୟ ଉପସ୍ଥିତ ହେଲେ । କିନ୍ତୁ ଯେମିତି ଜଣାପଡ଼ିଛି ଯେ ରାଜା ଆସୁନାହାନ୍ତି, ସେମିତି ସଭିଏଁ ପଳାଇବାକୁ ଛଟପଟ ହେଲେ । ହଠାତ୍ ଅଧ୍ୟକ୍ଷ କହିଲେ, "ଆପଣମାନଙ୍କ ଭିତରୁ କିଏସେ ଘୋଡ଼ାଗାଡ଼ିରେ ଆସି ଗାଡ଼ିବାଲାକୁ ଭଡ଼ା ଦେଇନାହାନ୍ତି ? ସିଏ ଘୋଡ଼ା ତଥା ଗାଡ଼ିବାଲା ପ୍ରତି ଏ ଅନ୍ୟାୟ କରିଛନ୍ତି, ସେ ବର୍ତ୍ତମାନ ଉଠିଯାଇ ଭଡ଼ା ଦେଇ ଆସନ୍ତୁ ।" କେହି ଉଠିଲେ ନାହିଁ । ବୈଠକ ଭଲ ଭାବରେ ଚାଲିଲା ।





# ସୁଲତାର ପରୀକ୍ଷା

ପ୍ରତାପଗଡ଼ର ଜମିଦାର ରୁଦ୍ରନାରାୟଣଙ୍କ ପୁଅ ରବିନାରାୟଣ ସହ ଜୟନଗରର ଜମିଦାରଙ୍କ ଝିଅ ସୁଲତାର ବିବାହ ହୋଇଥାଏ ।

ପ୍ରତାପ ଗଡ଼ ଓ ଜୟନଗର ଭିତରେ ବ୍ୟବଧାନ ବହୁତ । ପୁଣି ଯାତାୟତର ସୁବିଧା ନ ଥାଏ । ମଝିରେ ଗୋଟାଏ ବଣ ପଡ଼େ । ସେ ବଣ ଭିତରେ ସାଗରଦିଘୀ ନାମକ ହ୍ରଦ ଥାଏ । ସେହି ହ୍ରଦ ଅଞ୍ଚଳ ଥିଲା ବଡ଼ ବିପଜ୍ଜନକ । ସେ ଅଞ୍ଚଳ ଦେଇ ଗଲାବେଳେ ଅନେକେ ଚୋର ଡାକୁଙ୍କ ହାବୁଡ଼ରେ ପଡ଼ୁଥିଲେ ।

ଦିନେ ଜୟନଗରରୁ କେତେଜଣ ଲୋକ ଆସି ପ୍ରତାପଗଡ଼ରେ ପହଞ୍ଚିଲେ ଓ ଏହି ଖବର ଦେଲେ ଯେ ସୁଲତାର ମା' ଖୁବ୍ ଅସୁସ୍ଥ ହୋଇପଡ଼ିଛନ୍ତି । ସେ ସୁଲତାକୁ ଦେଖିବାକୁ ଚାହୁଁଛନ୍ତି ।

ଜମିଦାର ରୁଦ୍ରନାରାୟଣ ବୋହୂକୁ ବାପଘରକୁ ପଠାଇବାର ବ୍ୟବସ୍ଥା କଲେ । କିନ୍ତୁ ବାଟରେ ଚୋର ଡାକୁଙ୍କ ମୁକାବିଲା କରିବା ପାଇଁ ବୋହୂର ସବାରି ସହ ଦଳେ ପ୍ରହରୀ ପଠାଇଲେ ।

ଯାତ୍ରା ଆରମ୍ଭ ହେଲା ସୁରୁଖୁରୁରେ । ସବାରିର କବାଟ ଟିକିଏ ଖୋଲି ରଖି ସୁଲତା ପ୍ରାକୃତିକ ଦୃଶ୍ୟ ଉପଭୋଗ କରୁଥାଏ । ଦୁଇ ପହର ସରିକି ସେମାନେ ବଣ ଭିତରେ ଗୋଟାଏ ବଡ଼ ଗଛ ମୂଳରେ ବିଶ୍ରାମ ଓ ଖିଆପିଆ କଲେ । କିଛି ସମୟ ବିଶ୍ରାମ କରିସାରି ପୁଣି ସେମାନେ ଯାତ୍ରାରମ୍ଭ କଲେ ।

କିନ୍ତୁ ଗୋଟାଏ ସିଧା ରାସ୍ତାରେ ଯିବାର ଚେଷ୍ଟା କରି ସେମାନେ ବାଟ ହୁଡ଼ି ଅନେକ ସମୟ ଯାଏ ଏଣେ ତେଣେ ବୁଲିଲେ ଓ ଗୁହଁ

ଏ ସି ସରକାର, ଯାଦୁକର



ଘୂଡ଼ୁଁ ସନ୍ଧ୍ୟା ହୋଇଗଲା । ପ୍ରହରୀମାନଙ୍କ ଦଳ-ପତିକୁ କବାଟ ପାଖକୁ ଡାକି ସୁଲତା ଅନ୍ଧାର ହୋଇଗଲେ ଦସ୍ୟୁଦଳ ହାବୁଡ଼ରେ ପଡ଼ିବା ସମ୍ଭବ ବୋଲି ଆଶଙ୍କା ପ୍ରକାଶ କଲା ।

"ଝିଅ ! ଚିନ୍ତା କର ନାହିଁ । ଆମେ ତେବେ ତୁମ ସାଥିରେ ରହିଛୁଁ କାହିଁକି ? ଆମକୁ ପାରିବା ଭଳି ଡାକୁଦଳ ଏ ରାଜ୍ୟରେ ନାହାନ୍ତି !" ଦଳପତି ସାହସ ଦେଲା ।

କିନ୍ତୁ ଦଳପତିର କଥା ଶେଷ ନ ହେଉଣୁ ଦଳେ ଭୟଙ୍କର ଦସ୍ୟୁ ସେମାନଙ୍କ ଉପରକୁ ଝପଟିଆସିଲେ । କେତେଜଣ ପ୍ରହରୀ ମଲେ । ଅନ୍ୟମାନେ ଛତ୍ରଭଙ୍ଗ ଦେଲେ ।

ସେତେବେଳକୁ ଅନ୍ଧାର ଘୋଟିଆସିଲାଣି । ଡାକୁମାନେ ମଶାଲ ଧରି ସବାରି ପାଖକୁ ମାଡ଼ିଆସିଲେ । ସୁଲତା ନିଜର କେତେଖଣ୍ଡି ଅଳଙ୍କାର ଗୋଟାଏ ପୁଟୁଳି ବାନ୍ଧି ସେମାନଙ୍କ ଆଡ଼କୁ ଫୋପାଡ଼ିଦେଲା ।

ଡାକୁ ସର୍ଦ୍ଦାର ନିଜ ଅନୁଚରମାନଙ୍କୁ ହୁକୁମ ଦେଲା, "ତୁମେମାନେ ସବାରିକୁ ମୋ ଶିବିରକୁ ନେଇଯାଅ ।"

ଡାକୁମାନେ ସବାରି ଉଠାଇଲେ । ଜଣେ ଡାକୁ ସବାରି ପାଖ ଚାଲିଥାଏ । ସୁଲତା ତାକୁ ଚାହିଁ ଟିକିଏ ହସିଲା ଓ ତାକୁ ଖଣ୍ଡିଏ ଅଳଙ୍କାର ଧରାଇଦେଲା । ସେ ଅତି ଆନନ୍ଦରେ ଅଳଙ୍କାରକୁ ପକେଟରେ ପୁରାଇଦେଲା । ସୁଲତା ତା'ପରେ ତାକୁ ଖଣ୍ଡିଏ ପାନ ଧରାଇଦେଲା । ପାନଖଣ୍ଡିକ ଚୋବାଇ ଡାକୁଟି ସଙ୍ଗେ ସଙ୍ଗେ ଆର୍ତ୍ତନାଦ କରି ତଳେ ପଡ଼ିଗଲା ।

ସବାରିବାହକ ଡାକୁମାନେ ସଙ୍ଗେ ସଙ୍ଗେ ସବାରି ତଳେ ରଖି ନିଜ ସାଥୀର କ'ଣ ହେଲା ବୋଲି ତାକୁ ଘେରି ବସିପଡ଼ିଲେ । ସେହି ଅବସରରେ ସୁଲତା ସବାରିର ଅନ୍ୟ ପଟର କବାଟ ଖୋଲି ବାହାରିପଡ଼ି ଅନ୍ଧକାର ଭିତରେ କ୍ଷିପ୍ର ଗତିରେ ଯାଇ ଗୋଟାଏ ଗଛ ଚଢ଼ି ବସିଲା । ଗୋଟାଏ ଡାଳ ସହ ନିଜ ଶାଢ଼ି ଅଞ୍ଚଳ ଦ୍ୱାରା ନିଜକୁ ବାନ୍ଧିଦେଇ ସେ ପ୍ରାୟ



ଚେତାଶୂନ୍ୟ ଅବସ୍ଥାରେ ରହିଲା ।

ନିଜ ଇଜ୍ଜତ ହାନି ହେଲା ଭଳି କୌଣସି ଘଟଣା ଘଟିଲେ ଜୀବନ ହାରିବା ପାଇଁ ସୁଲତା ଯୋଡ଼ିଏ ପାନ ଭିତରେ ବିଷ ପୂରାଇ ନେଇଥିଲା । ସେଇଥିରୁ ଗୋଟିଏ ସେ ଡାକୁକୁ ଦେଇ ନିଜେ ଖସିଯାଇପାରିଲା । ତା' ସବାରି ବାହକ ଓ ଦେହରକ୍ଷୀମାନେ ଡାକୁଦଳ ଚାଲିଯିବା ପରେ ତାକୁ ଖୋଜାଖୋଜି କରି ନ ପାଇ ନିଜ ଗାଁକୁ ଫେରିଗଲେ ।

ଡାକୁଦଳର ଆକ୍ରମଣ କଥା ଓ ସୁଲତା ଅପହୃତା ହେବା ସମ୍ବାଦ ଉଭୟ ପ୍ରତାପଗଡ଼ ଓ ଜୟନଗରରେ ଯାଇ ପହଞ୍ଚିଲା । ଦୁଇ ବଂଶ ଶୋକାକୁଳ ହୋଇ ରହିଲେ ।

ସୁଲତା ଯେଉଁ ଗଛ ଉପରେ ଅଚେତ ହୋଇଯାଇଥିଲା, ତାହାର ଅଦୂରରେ ଥିଲା ଜଣେ ସାଧୁଙ୍କ ଆଶ୍ରମ । ସେ ସକାଳେ ଫୁଲ ତୋଳିବାକୁ ଆସି ତାକୁ ଦେଖିଲେ । ତାକୁ ନିଜ ସାଥିରେ ସେ ଆଶ୍ରମକୁ ନେଇଗଲେ ଓ ତା'ର ଶୁଶ୍ରୂଷା କଲେ । ସୁଲତା ଟିକିଏ ପ୍ରକୃତିସ୍ଥ ହେବା ପରେ ନିଜ ବାପ ଘରକୁ ଯିବାକୁ ଚାହିଁଲା । ସାଧୁ ତାକୁ ଜୟନଗର ନେଇଗଲେ ।

ସୁଲତା ଡାକୁମାନଙ୍କ ପାଖରୁ ଫେରିଆସି ନିଜ ବାପଘରେ ପହଞ୍ଚିବା ଖବର ପାଇ ତା' ଶ୍ୱଶୁର ବଂଶ ବିଶେଷ ଖୁସୀ ହେଲେ ନାହିଁ ।

ସୁଲତା ସାଧୁଙ୍କୁ କହିଲା, "ମହାରାଜ ! ମୁଁ ଡାକୁମାନଙ୍କ ପାଖରେ ଥିଲି ବୋଲି ସନ୍ଦେହ କରି ଶ୍ୱଶୁର କୁଳ ମୋତେ ଆଉ ଗ୍ରହଣ କରିବେ ନାହିଁ । ଆତ୍ମହତ୍ୟା ଛଡ଼ା ମୋର ଅନ୍ୟ ପନ୍ଥା ନାହିଁ ।"

"ମା, ସେ କଥା କହନା । ଆତ୍ମହତ୍ୟା ଘୋର ପାପ । ମୁଁ ଜାଣେ ତୁ ନିର୍ଦ୍ଦୋଷ ତଥା ପବିତ୍ର । ମୁଁ ତୋ ସ୍ୱାମୀ ଓ ଶ୍ୱଶୁରଙ୍କୁ ଭେଟି ସବୁ ବୁଝାଇଦେବି ।" ସାଧୁ କହିଲେ ।

ସାଧୁ ଯାଇ ପ୍ରତାପଗଡ଼ରେ ପହଞ୍ଚିଲେ । ସେ ପ୍ରଥମେ ସୁଲତାର ସ୍ୱାମୀକୁ ଭେଟିଲେ । ଯୁବକର ସ୍ୱଭାବ ତାଙ୍କୁ ବେଶ୍ ଭଲ ଲାଗିଲା । ଯୁବକ

ତାଙ୍କୁ କହିଲା, "ମହାରାଜ ! ମୁଁ ସୁଲତାକୁ ଆନନ୍ଦରେ ଗ୍ରହଣ କରିବି । କିନ୍ତୁ ମୋ ବାପା ଅତ୍ୟନ୍ତ ସନ୍ଦେହୀ ଓ ରକ୍ଷଣଶୀଳ । ଆପଣ ଯଦି କୌଣସି ମତେ ତାଙ୍କ ଆଗରେ ସୁଲତାର ପବିତ୍ରତା ପ୍ରମାଣ କରିଦିଅନ୍ତେ, ତେବେ ସବୁ ଅଡୁଆ ଛୁଡ଼ିଯାଆନ୍ତା ।"

ସାଧୁ ଜୟନଗର ଆସି ସୁଲତା ଓ ତା' ବାପାଙ୍କୁ ନେଇ ପୁଣି ପ୍ରତାପଗଡ଼ରେ ପହଞ୍ଚିଲେ । ସୁଲତା ଓ ତା' ବାପା ଗୋଟିଏ ଅତିଥିଶାଳାରେ ରହିଲେ । କାରଣ ହଠାତ୍ ସୁଲତାକୁ ରୁଦ୍ରନାରାୟଣ ଘରେ ପୂରାଇବେ ନାହିଁ ବୋଲି ଧାରଣା ହୋଇଥିଲା ।



ସାଧୁ ରୁଦ୍ରନାରାୟଣଙ୍କୁ ଭେଟି କହିଲେ, "ମୁଁ ଦୃଢ଼ ଭାବରେ କହୁଛି, ସୁଲତାକୁ କୌଣସି ଡାକୁ ସ୍ପର୍ଶ କରିନାହିଁ ।"

"ଆପଣ ସାଧୁ । ତେଣୁ ଆପଣଙ୍କ କଥାରେ ମୋର ବିଶ୍ୱାସ ହେଉଛି । କିନ୍ତୁ ଗାଁ ଲୋକେ ଏତେ ସହଜରେ ଏ କଥା ଗ୍ରହଣ କରିବେ ନାହିଁ । ସେମାନଙ୍କର ଲୋଡ଼ା ପ୍ରମାଣ ।" ରୁଦ୍ରନାରାୟଣ କହିଲେ ।

"ମୁଁ ଅଲୌକିକ ଶକ୍ତିରେ ପ୍ରମାଣ କରିଦେବି ଯେ ସୁଲତା ପବିତ୍ରା । ଆପଣ ତାହାହେଲେ ତାକୁ ଗ୍ରହଣ କରିବେ ତ ?" ସାଧୁ ପଚାରିଲେ ।

"ସାଧୁ ମହାରାଜ ! ଆପଣ ସେ ବିଷୟରେ ନିଶ୍ଚିତ ହୁଅନ୍ତୁ ।" ରୁଦ୍ରନାରାୟଣ କହିଲେ ।

ରୁଦ୍ରନାରାୟଣଙ୍କ ଘର ଆଗରେ ଗ୍ରାମର ମୁଖ୍ୟ ଲୋକମାନେ ଏକତ୍ର ହେଲେ । ସୁଲତା ଓ ତା' ବାପା ମଧ୍ୟ ସେଠାକୁ ଆସିଲେ । ହରିଦାସ ଗୋଟିଏ ମହମ ଗୋଳା, କାଚ ଗିଲାସ ଓ ଗୋଟିଏ ଚିମୁଟା ଆଣି ସମସ୍ତଙ୍କୁ ଦେଖାଇଲେ । ଏହାପରେ ଛୋଟିଆ ଟେବୁଲଟିଏ ଆଣି ରୁଦ୍ରନାରାୟଣଙ୍କ ଆଗରେ ଥୁଆ ହେଲା । ଗିଲାସରେ ଗଙ୍ଗାଜଳ ଭର୍ତ୍ତି କରାହେଲା । ତା'ପରେ ସାଧୁ ରୁଦ୍ରନାରାୟଣଙ୍କୁ କହିଲେ, ସେ ଯେପରି ଚିମୁଟା ସାହାଯ୍ୟରେ ମହମ ଗୋଳାକୁ ଉଠାଇ ଜଳ ଭିତରେ ରଖିଦେବେ । ରୁଦ୍ରନାରାୟଣ ଗୋଳା-

ଟିକୁ ଜଳ ଭିତରେ ଡୁବାଇଲେ । କିନ୍ତୁ ଚମୁଚା କାଢ଼ିନେବା ମାତ୍ରେ ଗୋଳା ଭାସିଉଠିଲା । ଅନ୍ୟମାନେ ଚେଷ୍ଟା କରି ମଧ୍ୟ ଗୋଳାକୁ ଜଳ ଭିତରେ ରଖାଇ ପାରିଲେ ନାହିଁ ।

ସାଧୁ ସୁଲତାକୁ ଡାକି କହିଲେ, "ଝିଅ ! ତୁ ଯଦି ପତିବ୍ରତା ହୋଇଥିବୁ, ତେବେ ଏ ଗୋଳାକୁ ଜଳ ଭିତରେ ବୁଡ଼ାଇ ରଖିଦେଇ ପାରିବୁ । ଥରେ ଚେଷ୍ଟା କରି ଦେଖ ।"

ଏହା କହି ସେ କାଚ ଗିଲାସ ଉଠାଇନେଇ ସୁଲତା ପାଖକୁ ଆଣି ସେ ଗୋଟିକ ଦେଖାଇ ପୁଣି ଟେବୁଲର ଗୋଟିଏ କଡ଼ରେ ରଖିଲେ । ସୁଲତା ଚମୁଚା ସାହାଯ୍ୟରେ ଗୋଳାଟିକୁ ଜଳ ଭିତରେ ବୁଡ଼ାଇ ଚମୁଚା ବାହାର କରି ଆଣିଲା । ଗୋଳା ଏଥର ଜଳ ଭିତରେ ରହିଲା ।

ସମସ୍ତେ ହର୍ଷନାଦ କଲେ । ସୁଲତାକୁ ତା' ଶ୍ୱଶୁର ଆଦର ପୂର୍ବକ ଘରକୁ ନେଲେ । ସାଧୁ ଦୁଇ ଜମିଦାରଙ୍କୁ ପରାମର୍ଶ ଦେଲେ କି ସେ ଦୁହେଁ ଏକତ୍ର ଲୋକବାକ ଧରି ବଣରୁ ଦସ୍ୟୁଦଳଙ୍କୁ ନିକାଲି ଦିଅନ୍ତୁ । ସେମାନେ ରାଜୀ ହେଲେ ।

ସାଧୁ ଯେଉଁ ଯାଦୁ କରିଥିଲେ, ତାହା ସହଜ । ସେ ମହମଗୋଳା ଭିତରେ ଖଣ୍ଡିଏ ଷ୍ଟିଲ ଲୁହା ଥିଲା । ଟେବୁଲର ଯେଉଁ କଡ଼ରେ ସେ ଗିଲାସଟି ଦ୍ୱିତୀୟ ଥର ଥୋଇଲେ, ସେ କଡ଼ରେ ଆବରଣ ତଳେ ଥିଲା ଖଣ୍ଡିଏ ଶକ୍ତିଶାଳୀ ଚୁମ୍ବକ । ଲୁହା ଥିବା ମହମଗୋଳାକୁ ଚୁମ୍ବକ ଆକର୍ଷଣ କରିବା ଫଳରେ ଗୋଳା ଜଳ ତଳେ ବସି ରହିଥିଲା ।

ଆନନ୍ଦର କଥା, ସାଧୁଙ୍କ ନିର୍ଦ୍ଦେଶ ମାନ୍ୟ କରି ଦୁଇ ଜମିଦାର ପରସ୍ପର ପରାମର୍ଶ କରି ଗୋଟିଏ ସଶସ୍ତ୍ର ସିପାହିବାହିନୀ ଗଠନ କଲେ ଓ କେତେଦିନ ପର୍ଯ୍ୟନ୍ତ ବଣ ତଲାସ୍ କରି ଡାକୁଦଳକୁ ଠାବ କରି ସେମାନଙ୍କୁ ବନ୍ଦୀ କଲେ ।





# ହାର ଉଦ୍ଧାର

ପ୍ରଭୁଦାସ ଓ ଗୋକୁଳଦାସ ହେଲେ ଦୁଇ ଭାଇ । ବାପାଙ୍କ ପରଲୋକ ପରେ ଦୁହେଁ ଭିନେ ହୋଇ ଯିଏ ଯା' ବାଟରେ ଚଳୁଥାନ୍ତି ।

ପ୍ରଭୁଦାସର ସ୍ତ୍ରୀ ବିମଳା ସାଧୁ ପ୍ରକୃତିର ସ୍ତ୍ରୀଲୋକ । କିନ୍ତୁ ଗୋକୁଳଦାସର ସ୍ତ୍ରୀ ଲୀଳା ଈର୍ଷ୍ୟାରେ ଭରି ରହିଥାଏ । ଭିନେ ହୋଇଯିବା ପରେ ମଧ୍ୟ ସେ ବିମଳାର ଶିରି ଦେଖିପାରେ ନାହିଁ ।

ଦିନେ ଲୀଳା ଦେଖିଲା, ବିମଳା ଗୋଟାଏ ନୂଆ ସୁନା ହାର ଗଢ଼ାଇଛି । ତା' ମନ ବିଗିଡ଼ିଗଲା । ଦିନଯାକ ହାର ବିଷୟ ଚିନ୍ତା କରି ସେ ଯାଇ ବିମଳାକୁ କହିଲା, "ଭଉଣୀ ! ତୁମ ହାରଟି ମୋତେ ଦୁଇ ତିନ ଦିନ ପାଇଁ ଦିଅନ୍ତ କି ! ମୁଁ ସେମିତି ଗୋଟାଏ ହାର ନିଜ ପାଇଁ ଗଢ଼ାଇବାକୁ ଚାହେଁ ।"

ବିମଳା ଚିନ୍ତେ ମଧ୍ୟ ଇତସ୍ତତଃ ନ କରି ହାରଟି ଲୀଳାକୁ ଦେଇଦେଲା ।

ଲୀଳା ଆଉ ସେ ହାର ଫେରାଇବାର ନାମ ଧରିଲା ନାହିଁ । ମାସକ ପରେ ବିମଳା ହାର କଥା ମନେ ପକାଇଦେବାରୁ ଲୀଳା କହିଲା, "କି ହାର କଥା କହୁଛ ମୁଁ ଜମାରୁ ବୁଝିପାରୁ ନାହିଁ । ମୋର କ'ଣ ହାର ଅଭାବ ହୋଇଛି ଯେ ମୁଁ ତୁମଠୁ ହାର ଆଣିବି ? ତୁମେ ମୋତେ ଦଶଜଣଙ୍କ ଆଗରେ ଅପମାନ ଦେବାକୁ ବାହାରିଛ କି ?"

ବିମଳା ଆଖି ଛଳ ଛଳ ହୋଇଗଲା । ଲୀଳା ହାର ନେଲା ତ ନେଲା, ତା' ଉପରେ ଆହୁରି କଟୁ କଥା ବି ଶୁଣାଇଦେଲା । ଯାହାହେଉ, ସେ ଊଁ ଚୁଁ ନ କରି ଘରକୁ ଲେଉଟିଆସିଲା ।

ବିମଳାଠୁ ସେ କଥା ପ୍ରଭୁଦାସ ଶୁଣି କହିଲା,

"ସ୍ୱଛ । କାହାକୁ କିଛି କୁହ ନାହିଁ । ସିଏ ଯେତେହେଲେ ଆମ ଘରର ଲୋକ ।"

ମାସକ ପରେ ବିମଳାର ଝିଅ ତା' ଶ୍ୱଶୁର ଘରୁ ବାପଘରକୁ ଆସିଲା । ହାର କଥା ଶୁଣି ସେ କିଛି ଚୁପ୍ ରହିପାରିଲା ନାହିଁ । "ଏତେ ଅନ୍ୟାୟକୁ ସହିଯିବା ବି ଅନ୍ୟାୟ ।" ସେ କହିଲା ଓ ସେ ଦିଗରେ କ'ଣ କରାଯିବା ଉଚିତ, ବୁଦ୍ଧି ପାଞ୍ଚି ତା' ମା'କୁ ବୁଝାଇଦେଲା ।

ବିମଳାର ଝିଅ ଆସିଛି ଶୁଣି ଲୀଳା ତାକୁ ଦେଖିବାକୁ ଆସିଲା । ବିମଳାର ଝିଅ ସେଇ ସୁଯୋଗକୁ ଅପେକ୍ଷା କରି ଥାଏ । ଲୀଳା ଆସୁଥିବାର ଜାଣି ସେ ନ ଜାଣିଲା ଭଳି ବିମଳାକୁ ପଚାରିଲା, "ମା' ! ତୁ ଯେଉଁ ନୂଆ ହାର କରିଛୁ ବୋଲି ମୋତେ ଲେଖିଥିଲୁ, ସେ ଖଣ୍ଡିକ କାହିଁ ?"

ଲୀଳା ବାହାରପଟେ ଅଟକିଯାଇ ବିମଳା କ'ଣ କହୁଛି ଶୁଣିବା ପାଇଁ କାନ ଡେରିଲା ।

"ଝିଅ ! ସେ କଥା କ'ଣ କହିବି ! ଈଶ୍ୱର ଆମକୁ ରକ୍ଷା କରିଦେଇଛି । ସେ ହାର ଜଣେ ଫେରିବାଲାଠାରୁ ଆମେ ଶସ୍ତାରେ କିଣିଥିଲୁ । କିଏ ଜାଣିଥିଲା ସିଏ ଚୋରି ମାଲ୍ ବୋଲି ! ଭାଗ୍ୟକୁ ଲୀଳାଅପା ସେ ଖଣ୍ଡିକ ମୋ ପାଖରୁ ନେଇଗଲେ । ମୁଁ ପଚାରିବା ବେଳକୁ ସେ ସେ କଥା ଭୁଲିଗଲେଣି । ତାଙ୍କୁ ବା ଏବେ କିପରି ଫିଟାଇ କହିବି ଯେ ସେ ଗୋଟିକ ଚୋରି ମାଲ୍ ! ଏବେ ଆମେ ଶୁଣୁଛୁ, ପୋଲିସ୍ ଆସି ତଲାସ କରିବ । କାରଣ ଫେରିବାଲା ଏଇ ସାହିରେ ହାରଟି ବିକିଥିଲା ବୋଲି ମାନିଯାଇଛି । ହାର ଆମ ଘରୁ ବାହାରିଥିଲେ ଆମ ଅବସ୍ଥା କ'ଣ ହୋଇଥାନ୍ତା ବୁଝିପାରୁଥିବୁ । ବର୍ତ୍ତମାନ ସେଥିରୁ ଆମେ ବର୍ତ୍ତିଗଲୁ ।" ବିମଳା କହିଲା ।

ଲୀଳା ଚଟାପଟ୍ ନିଜ ଘରକୁ ଫେରିଗଲା । କିଛି ସମୟ ପରେ ଦେଖାଗଲା, ହାରଟି ତାଙ୍କ ଘର ଭିତରକୁ କିଏ ଫୁଟିଦେଇଛି ।





# ଭୋଳା ଶମ୍ଭୁନାଥ

ଶମ୍ଭୁନାଥ ନହାତ ଭୋଳା ମଣିଷ । ନିଜ ଗାଁରେ ତାକୁ ସମସ୍ତେ ଭଲ୍‌କରି ଚିହ୍ନିଥିଲେ । ତେଣୁ ଜୀବିକା ଅର୍ଜନ ପାଇଁ ବିଚରାକୁ କୌଣସି ପନ୍ଥା ମିଳିଲା ନାହିଁ । ସେ ଯାଇ ରାମନଗର ଗାଁରେ ଜାନକୀପ୍ରସାଦ ଘରେ ଗୋରୁମଣା ରହିଲା ।

ଦିନେ ସନ୍ଧ୍ୟାବେଳେ ସେ ଗୁହାଳରେ କାମ କରୁଛି ଜାନକୀପ୍ରସାଦ ସ୍ତ୍ରୀ ଗୌରି ତାକୁ କହିଲା, "ଗୋଟାଏ ମଇଁଷି ଏ ପର୍ଯ୍ୟନ୍ତ ପଡ଼ିଆରୁ ଫେରି ନାହିଁ । ଯାଅ ! ତାକୁ ଖୋଜି ନେଇଆସ ।"

ଶମ୍ଭୁନାଥକୁ ସକାଳେ ମୁଠାଏ ପଖାଳ ଭାତ ମିଳିଥିଲା । ସେତେବେଳକୁ ଭୋକରେ ଆଉ ତା'ର ଗୋଡ଼ ଚଳୁ ନାହିଁ । କିନ୍ତୁ ସେ କଥା କହି କିଛି ଲାଭ ନାହିଁ ଜାଣି ଶମ୍ଭୁନାଥ ମଇଁଷିର ସନ୍ଧାନରେ ବାହାରିଗଲା । ଅନ୍ଧାରରେ ଅନେକ ସମୟ ଏଣେ ତେଣେ ଖୋଜାଖୋଜି କରି ମଧ୍ୟ ମଇଁଷି ନ ପାଇବାରୁ ସେ ହତାଶ ହୋଇ ଗାଁ ବାହାରେ ଥିବା ଗୋଟାଏ ଭଙ୍ଗା ଦେଉଳ ପିଣ୍ଡାରେ ବସିପଡ଼ିଲା । ବିନା ମଇଁଷିରେ ଖାଉନ୍ଦ ଘରକୁ ଫେରିଲେ ଖାଇବାକୁ ତ ମିଳିବ ନାହିଁ, ବରଂ ଗାଳିହିଁ ମିଳିବ । ତେଣୁ ସେଇଠାରେ ରାତିକ ବିତାଇ ସକାଳେ ଆଉ କୁଆଡ଼େ ଯାଇ ଗୃହକରି ଖୋଜିବ ବୋଲି ସେ ଭାବୁଥାଏ ।

ଅଧରାତିରେ ସେ ଶୁଣିଲା ଦୁଇଜଣ ଲୋକ କଥାବାର୍ତ୍ତା ହେଉଛନ୍ତି । ଜଣେ କହୁଛି, "ଗହଣା-ତକ ଏଇଠାରେ ପୋତିଦେବା । କାଲି ସକାଳେ ହୁଲସ୍ଥୁଲ୍ ପଡ଼ିବ । ଗୋଳମାଳ ଶାନ୍ତ ପଡ଼ି-ଆସିଲେ ଆମେ ଖୋଳି ନେଇଯିବା ।"

ଏହା କହି ସେମାନେ ଗୋଟାଏ ଗାତ ଖୋଳି ତହିଁ ଭିତରେ ଗଣ୍ଠିଲିଟିଏ ପୋତିଲେ । ଶମ୍ଭୁନାଥ ବୁଝିଲା, ସେମାନେ ଚୋର ।

"ଏ ଗଣ୍ଠିଲିଟି ନେଇଗଲେ ଖାଉନ୍ଦାଣୀ ନିଶ୍ଚେ ମଇଁଷି ହଜିବା ଦୁଃଖ ଭୁଲିଯାଇ ମୋତେ ପେଟ ପୂରାଇ ଖାଇବାକୁ ଦେବ ।"

ଏହା ଭାବି ଶମ୍ଭୁ ଚଟାପଟ୍ ଗାତ ଖୋଳି

ଦେବେନ୍ଦ୍ରନାଥ



ଗଣ୍ଠିଲ ବାହାର କରି ଜାନକୀପ୍ରସାଦ ଘରେ ଯାଇ ପହଞ୍ଚିଲା ।

ଅଧ ରାତିରେ ଫେରିବାର ଦେଖି ଗୌରି ତାକୁ ଗାଳି ଦେବାକୁ ଯାଉଥିଲା । ତେବେ ଗଣ୍ଠିଲ ଦେଖି ଖୁସୀ ହୋଇଗଲା ।

"ମା ! ଭୋକରେ ପେଟ ଜଳୁଛି । କିଛି ଖାଇବାକୁ ଦିଅ ।" ଶମ୍ଭୁ କହିଲା ।

ତୁମପାଇଁ ରୁଟି ରଖି ବୁହିଁବସିଥିଲି । କିନ୍ତୁ ତୁମେ ଏତେ ରାତି ଯାଏ ନ ଆସିବାରୁ କୁକୁରକୁ ଦେଇଦେଲି । ଯାଅ, ଶୋଇପଡ଼ । ନିଦ ଆସିଲେ ଭୋକ ଭୁଲିଯିବ ।" ଗୌରି କହିଲା ।

ଶମ୍ଭୁ ଦୀର୍ଘନିଃଶ୍ୱାସ ଛାଡ଼ି ଗୁହାଳରେ ଯାଇ ଶୋଇପଡ଼ିଲା ।

ଗୌରି ଜାନକୀପ୍ରସାଦକୁ ନିଦରୁ ଉଠାଇ ଗଣ୍ଠିଲ ଖୋଲିଲା । ତା ଭିତରେ ଥିବା ମୂଲ୍ୟବାନ୍ ଅଳଙ୍କାରମାନ ଦେଖି ଜାନକୀପ୍ରସାଦ ଭୟରେ ଥରିଗଲା ଓ କହିଲା, "ଏଏ ସାଧାରଣ ଲୋକର ନୁହେଁ । ହୁଏତ ରାଜପରିବାରରୁ ଚୋରି ହୋଇଛି । ଏହାକୁ ମୁହୂର୍ତ୍ତେ ଘରେ ରଖିବା ଅର୍ଥ ବିପଦ ଡାକି ଆଣିବା ।"

"ଆମ ଘରେ ଏସବୁ ଅଛି ବୋଲି କିଏ କିପରି ଜାଣିବ ?" ଗୌରି ତର୍କ କଲା ।

"ବୋକା ଶମ୍ଭୁନାଥହିଁ ସ୍ୱରଆଡ଼େ କହି-ବୁଲିବ । ତାକୁ କୌଣସି ପରାମର୍ଶ ଦେଇ କେହି ରୋକିପାରିବେ ନାହିଁ ।" ଜାନକୀପ୍ରସାଦ କହିଲା ।

ଗୌରି ଟିକିଏ ଚିନ୍ତା କରି କହିଲା, "ବେଶ୍, ଶମ୍ଭୁର ଧାରଣା ଯେପରି ବଦଳିଯିବ, ମୁଁ ସେହି ବ୍ୟବସ୍ଥା କରୁଛି ।" ଏହା କହି ସେ ଶମ୍ଭୁକୁ ନିଦରୁ ଜଗାଇ କହିଲା, "କହୋ ପରା ଗହଣା ଗଣ୍ଠିଲ ଆଣିଥିଲ ? କାହିଁ ଗହଣା ?"

ଶମ୍ଭୁ ଅପରାଧୀ ଭଳି କହିଲା, "ମା, ମୁଁ ତ ଆଉ ଗଣ୍ଠିଲ ଖୋଲି ଦେଖି ନାହିଁ ! ଚୋରମାନେ ଯାହା କହୁଥିଲେ, ତାହାହିଁ ଶୁଣି ତୁମକୁ କହୁଛି ।"

"ମୁଁ ଗଣ୍ଠିଲ ଖୋଲି ଦେଖିବା ବେଳକୁ ସେଥିରେ ମାଟି ଗୋଡ଼ି ଭର୍ତ୍ତି ହୋଇଛି । ଯାଅ, ଯେଉଁଠାରୁ ଆଣିଥିଲ, ସେଠାରେ ପୋତିଦେଇ ଆସ ।" ଏହା କହି ଗୌରି ଶମ୍ଭୁ ହାତରେ ମାଟି ଗୋଡ଼ି ଭର୍ତ୍ତି ଗଣ୍ଠିଲ ଧରାଇଦେଲା ।

ଶମ୍ଭୁ ଗଣ୍ଠିଲ ଧରି ଯାଇ ଭଙ୍ଗା ଦେଉଳ ପାଖରେ ପୁରୁଣା ଗାତଟି ପୁଣି ଖୋଳି ସେଥିରେ ଗଣ୍ଠିଲ ପୋତିସାରିବା ବେଳକୁ ସେଠାକୁ ଫେରି-

ଆସିଥିବା ଚୋରମାନେ ତାକୁ ଦେଖିପକାଇଲେ । ଶମ୍ଭୁ ଚାଲିଗଲା ବେଳକୁ ସେମାନେ ତାକୁ ଅନୁସରଣ କରି ସେ ଜାନକୀପ୍ରସାଦ ଘରକୁ ଯିବାର ଦେଖିଲେ । ତା'ପରେ ସେମାନେ ପୁଣି ମନ୍ଦିର ପାଖକୁ ଆସି ଗଣ୍ଠିଲି ବାହାର କରି ଦେଖିଲେ, ସେଥିରେ ଅଳଙ୍କାର ବଦଳରେ ରହିଛି ମାଟି ଗୋଡ଼ି ।

ପରଦିନ ସକାଳେ ପ୍ରଚାର ହୋଇଗଲା, ରାତିରେ ରାଜମହଲରୁ ରାଣୀଙ୍କର କେତେକ ମୂଲ୍ୟବାନ ଅଳଙ୍କାର ଚୋରି ଯାଇଛି । ଯିଏ ଚୋରର ସନ୍ଧାନ ଦେଇପାରିବ, ସେ ହଜାରେ ଟଙ୍କା ପୁରସ୍କାର ପାଇବ ।

ସେ ଘୋଷଣା ଶୁଣି ଜାନକୀପ୍ରସାଦ ମନରେ ଶାନ୍ତ ରହିଲା ନାହିଁ । କିନ୍ତୁ ଗୌରି ତାକୁ ଆଶ୍ୱାସନା ଦେଉଥାଏ । ସେ କହୁଥାଏ, ଏମିତି କେତେ ଚୋରି ହୁଏ । କେଇଦିନ ପରେ ସମସ୍ତେ ଏ କଥା ଭୁଲିଯିବେ ।

କେତେଦିନ ପରେ ଗୌରି ଆଉ ସମ୍ଭାଳି ହୋଇପାରିଲା ନାହିଁ । ରାଣୀଙ୍କ ଗହଣା ଲଗାଇ ସେ କିପରି ଦିଶୁଛି, ତାହା ଦେଖିବା ପାଇଁ ଆଗରେ ଦର୍ପଣ ଥୋଇ ଗହଣାତକ ଲଗାଇବାକୁ ଲାଗିଲା । ଗର୍ବରେ ସେ ଫାଟିପଡ଼ୁଥାଏ ।

ହଠାତ୍ ବାଡ଼ରେ କେହି ପଶିବା ଭଳି ମନେ ହେବାରୁ ଶମ୍ଭୁ ଉଠିପଡ଼ିଲା ଓ ବାରନ୍ଦାକୁ ଯାଇ ଝରକା ଦେଇ ଭିତରକୁ ଅନାଇଲା । ଗୌରି ରାତି ଅଧରେ ଗହଣାତକ ଲଗାଇବାର ଦେଖି ସେ ଗହଣା ଗଣ୍ଠିଲି କଥା ତା'ର ମନେ ପଡ଼ିଗଲା । ସେ ବୁଝିଲା, ବାସ୍ତବିକ ସେ ଗଣ୍ଠିଲିରେ ଗହଣାହିଁ ଥିଲା — ରାଣୀଙ୍କ ଗହଣା । ଗୌରିହିଁ ଅଳଙ୍କାରଗୁଡ଼ିକୁ ବାହାର କରିନେଇ



ଗଣ୍ଡିଲଟିରେ ମାଟି ଗୋଡ଼ ପୁରାଇଥିଲା !

ସେ ଯାଇ ପୁଣି ଗୁହାଳରେ ଶୋଇପଡ଼ିଲା । କିନ୍ତୁ ନିଦ ହେଲା ନାହିଁ । ପୂର୍ବରୁ ସେ ଯେଉଁ ପାଦଶବ୍ଦ ଶୁଣିଥିଲା, ପୁଣି ସେଇଭଳି ଶବ୍ଦ ଶୁଭିଲା ।

ସେ ଆଶ୍ଚର୍ଯ୍ୟ ହୋଇ ଲକ୍ଷ୍ୟ କଲା, ଦୁଇଜଣ ଲୋକ ଜାନକୀପ୍ରସାଦ ଘର କବାଟରେ ଶବ୍ଦ କରୁଛନ୍ତି ।

"ଗୌରୀ ! କବାଟ ଖୋଲ !" ସେମାନଙ୍କ ଭିତରୁ ଜଣେ କହିଲା ।

"କିଏ ?" ଭିତରୁ ଗୌରୀ ପଚାରିଲା ।

"ଆରେ, ତୁ କ'ଣ କଣ୍ଠସ୍ୱରରୁ ମୋ ଭାଇକୁ ଚିହ୍ନିପାରୁନାହୁଁ ?" ଲୋକଟି କହିଲା ।

"ଭାଇ ! ଏତେ ରାତିରେ !" ଏହା କହି ଗୌରୀ କବାଟ ଖୋଲି ଚୋରମାନଙ୍କୁ ଦେଖି ପୁଣି କବାଟ ବନ୍ଦ କରିବାକୁ ଚେଷ୍ଟା କଲା । କିନ୍ତୁ ପାରିଲା ନାହିଁ । ସେମାନେ କବାଟ ଠେଲି ରଖି ଭିତରକୁ ପଶିଗଲେ ଓ ଭିତରୁ କବାଟ କିଳି ଗୌରୀକୁ ଗୋଟିଏ ଖମ୍ବ ଦେହରେ ବାନ୍ଧିଦେଲେ । ଗୌରୀ ଚିତ୍କାର କଲା । ଜାନକୀପ୍ରସାଦ ଉଠିପଡ଼ିଲା । ଚୋରମାନେ ତାକୁ ବି ବାନ୍ଧିପକାଇଲେ । ତା'ପରେ ଗୌରୀ ଦେହରୁ ଗୋଟା ଗୋଟା କରି ଅଳଙ୍କାରମାନ ବାହାର କରିନେବାକୁ ଲାଗିଲେ ।

କିନ୍ତୁ ସେମାନେ ଯେତେବେଳେ ପଳାଇବାକୁ ଉଦ୍ୟମ କଲେ, ସେତେବେଳକୁ ଦେଖିଲେ ବାହାରୁ କବାଟ ବନ୍ଦ । ଶମ୍ଭୁନାଥ କବାଟ ବନ୍ଦ କରି ଦୌଡ଼ିଯାଇ ଗାଁରେ ସେତେବେଳେ ଗୁଉଣୀ ପକାଇଥିବା ସିପାହିଦଳକୁ ଖବର ଦେଲା । ସେମାନେ ଆସି ଚୋରଙ୍କୁ ଧରିନେଲେ ।

ଶମ୍ଭୁନାଥ ରାଜଦରବାରରେ ସବୁ କଥା ଆମୂଳଚୂଳ କହିଗଲା । ରାଜା ତାକୁ ହଜାରେ ଟଙ୍କା ପୁରସ୍କାର ଦେଲେ । ଚୋରମାନଙ୍କୁ ହେଲା ଯାବଜ୍ଜୀବନ କାରାଦଣ୍ଡ । ଚୋରିମାଲ୍ ଚୋରି କରିଥିବା ଅପରାଧରେ ଜାନକୀପ୍ରସାଦ ଓ ଗୌରୀକୁ ବର୍ଷେ କାରାଦଣ୍ଡ ମିଳିଲା ।

ଶମ୍ଭୁନାଥ ନିଜ ଗାଁକୁ ଯାଇ ଖଣ୍ଡିଏ ଜମି କିଣି ଚାଷବାସ କରି ଭଲରେ ରହିଲା ।



# ଗର୍ଦ୍ଦଭ-ସଙ୍ଗୀତ

ଅନେକ ଦିନ ତଳର କଥା । ଜଣେ ରାଜା ଥିଲେ । ସେ କେତେବେଳେ କି ପ୍ରକାର ଖିଆଲ୍‌ରେ କାମ କରନ୍ତି, ତା'ର କୌଣସି ଥଳ କୂଳ ନ ଥାଏ । ଥରେ ସେ ଘୋଷଣା କଲେ, ଯିଏ ବହୁତ ମଜାର ସ୍ୱପ୍ନ ଦେଖିଥିବ ଓ ତାଙ୍କୁ ଶୁଣାଇବ, ସେ ମୋଟା ପୁରସ୍କାର ପାଇବ । ହଜାରେ ସରିକି ଲୋକ ସ୍ୱପ୍ନ ଶୁଣାଇବାକୁ ଆସିଗଲେ । ପୁରସ୍କାର ମିଳୁ ନ ମିଳୁ, ରାଜା ସ୍ୱପ୍ନ ଶୁଣିବା ଯାଏ ସମସ୍ତେ ରାଜାଙ୍କ ଅତିଥି ହୋଇ ରହିବେ ! ରାଜା ମନ୍ତ୍ରୀଙ୍କୁ ସେମାନଙ୍କ ରହିବାର ବ୍ୟବସ୍ଥା କରିବା ପାଇଁ ଆଦେଶ ଦେଲେ ।

ମନ୍ତ୍ରୀ ଭୀଷଣ ବିରକ୍ତ ହୋଇ ସେମାନଙ୍କୁ ଏକ ବିରାଟ ଅତିଥି ଭବନରେ ରଖାଇ ହଜାର ଗଧ ଆଣି ସେ ଭବନ ଆଗରେ ଏକତ୍ର କଲେ । ସ୍ୱପ୍ନ ଶୁଣାଇବା ଲୋକେ ଭବନରୁ ବାହାରି ପାରିଲେ ନାହିଁ ।

ରାଜା ତାହା ଶୁଣି କଥା କ'ଣ ବୋଲି ମନ୍ତ୍ରୀଙ୍କୁ ପଚାରିବାରୁ ମନ୍ତ୍ରୀ କହିଲେ, "ମହାରାଜ ! ଗଧ-ମାନେ କହୁଛନ୍ତି, ସେମାନେ ସୁନ୍ଦର ଗୀତ ବୋଲି ପାରନ୍ତି । ରାଜାଙ୍କର ଯଦି ହଜାରେ ସ୍ୱପ୍ନ ଶୁଣିବାର ସମୟ ଅଛି, ସେ ଆଗେ ହଜାରେଟି ଗର୍ଦ୍ଦଭ-ଗୀତ ଶୁଣନ୍ତୁ ।"

ରାଜା ଭାବି କହିଲେ, "ଆମ୍ଭର ବରଂ ସ୍ୱପ୍ନ ଶୁଣିବା ନ ହେଉ, ଗଧମାନଙ୍କୁ କହିଦିଅନ୍ତୁ ଆମ୍ଭର ସମୟ ନାହିଁ । ସମସ୍ତଙ୍କୁ ବିଦାୟ କରି ଦିଅନ୍ତୁ ।"





# କୂଅର କରାମତି

ଗୋଟିଏ ଗାଁରେ ଥିଲା ମଙ୍ଗଳ ନାମକ କୁଶଳୀ ସନ୍ତରଣକାରୀ । ଖାଲି ସନ୍ତରଣରେ ନୁହେଁ, ପାଣି ଭିତରେ ଅନେକ ସମୟ ଧରି ଉବୁଟୁବୁହେବାରେ ମଧ୍ୟ ସେ ସମସ୍ତଙ୍କୁ ଟପି ଯାଉଥାଏ । ରାଜା ଖୁସୀ ହୋଇ ତାକୁ ଗୋଟିଏ ସୁନ୍ଦର ପିତଳ ମୂର୍ତ୍ତି ଉପହାର ଦେଇଥାନ୍ତି ।

ଥରେ ଗାଁର ଶେଠ୍‌ଜୀ ସେ ପିତଳ ମୂର୍ତ୍ତିଟି ଦେଖିଲେ । ତାଙ୍କୁ ସେ ଗୋଟିକ ବଡ଼ ଭଲ ଲାଗିଲା । ନିଜ ଘରେ ତାକୁ ରଖି ଘରର ଶୋଭା ବଢ଼ାଇବା ଉଦ୍ଦେଶ୍ୟରେ ସେ ମଙ୍ଗଳଠୁ ତାହା କିଣି ନେବାକୁ ଚାହିଁଲେ ।

"ଶେଠ୍‌ଜୀ ! ଏ ଜିନିଷ ମୁଁ ବିକିବି ନାହିଁ । କାରଣ ଏହା ରାଜାଙ୍କ ଉପହାର । ତେବେ ଆପଣ କିଛି ଦିନ ପାଇଁ ଏହାକୁ ନିଜ ପାଖରେ ରଖି ପାରନ୍ତି ।" ମଙ୍ଗଳ କହିଲା ।

"ବେଶ୍ ।" ଏହା କହି ଶେଠ ମୂର୍ତ୍ତିଟି ରଖିନେଲେ । କିନ୍ତୁ ତାଙ୍କ ଅଭିମିକା ଦାରୁଣ ଆଘାତ ପାଇଲା । ସେ ଭାବିଥିଲେ ଟଙ୍କା ଦ୍ୱାରା ସେ ଯାହା ଇଚ୍ଛା କିଣି ପାରିବେ ।

ଶେଠ୍‌ଜୀ ସେ ପିତଳ ମୂର୍ତ୍ତି ଅନୁକରଣରେ ଜଣେ ଭଲ ମୂର୍ତ୍ତିଗଢ଼ାଳି ଦ୍ୱାରା ଗୋଟିଏ ଅବିକଳ ମାଟିର ମୂର୍ତ୍ତି ତିଆରି କରାଇଲେ ଓ ତହିଁ ଉପରେ ପିତଳ ରଙ୍ଗ ଚଢ଼ାଇ ରଖିଲେ ।

ସାତଦିନ ପରେ ମଙ୍ଗଳ ମୂର୍ତ୍ତିଟି ନେବାକୁ ଆସିବାରୁ ଶେଠ୍‌ଜୀ ତାକୁ ଅସଲ ପରିବର୍ତ୍ତେ ନକଲ ମୂର୍ତ୍ତିଟି ଧରାଇ ଦେଲେ । ନେଲାବେଳେ ମଙ୍ଗଳ ବୁଝି ପାରିଲା ନାହିଁ, କିନ୍ତୁ ଘରକୁ ଯାଇ ମୂର୍ତ୍ତିଟିକୁ ଯଥା ସ୍ଥାନରେ ଥୋଇବା ମାତ୍ରେ ଆବାଜ୍‌ରୁ ବୁଝିଲା ତାହା ପିତଳ ନୁହେଁ । ଟିକିଏ ପରୀକ୍ଷା କରିବାରୁ ଜଣାପଡ଼ିଗଲା ଯେ ତାହା

ମାଧବ

ସାଧାରଣ ମାଟିରେ ତିଆରି ହୋଇଛି ।

ସେ ସଙ୍ଗେସଙ୍ଗେ ଶେଠ୍‌ଜୀଙ୍କ ଘରକୁ ଯାଇ କହିଲା, "ଆଜ୍ଞା ! ମୋ ସାଙ୍ଗରେ ଖେଳନ୍ତୁ ନାହିଁ । ମୋ ପିତଳ ମୂର୍ତ୍ତି ରଖି ଆପଣ ମାଟିର ମୂର୍ତ୍ତି ଦେଇଛନ୍ତି । ହେଲା । ଏଥର ମୋ ଅସଲ ଜିନିଷ ଫେରାଇ ଦିଅନ୍ତୁ ।"

"ମଙ୍ଗଳ ! ତୁମେ କହୁଛ କ'ଣ ! ତୁମେ ଯେଉଁ ମୂର୍ତ୍ତି ଦେଇଥିଲ, ମୁଁ ତାହାହିଁ ଫେରାଇ ଦେଇଛି । ତେବେ ତୁମ ମୂର୍ତ୍ତିଟିକୁ ମୁଁ କୂଅ ପାଣିରେ ମାଜିଥିଲି । ଯଦି ସେ କୂଅ ପାଣିର କରାମତିରେ ପିତଳ ମାଟି ହୋଇ ଯାଇଥିବ, ତେବେ ମୁଁ ନାଚାର ।"

ମଙ୍ଗଳ ଆଉ ବୃଥା ବାକ୍ୟବ୍ୟୟ ନ କରି ଘରକୁ ଫେରି ଆସିଲା ଓ ସୁଯୋଗକୁ ଅପେକ୍ଷା କଲା ।

ଦିନେ ଶେଠ୍‌ଜୀଙ୍କ ସ୍ତ୍ରୀ କୂଅରୁ ପାଣି କାଢୁଥିବା ବେଳେ ତାଙ୍କର ବିଶାଳ ପିତଳ ଗରାଟି ପାଣି ଭିତରକୁ ଖସିପଡ଼ିଲା । ଗାଁ ଭିତରେ ଥିଲା ସେହି ଗୋଟିକ ବୋଲି କୂଅ । ତାହା ଅତି ଗଭୀର । ସେଥିରେ ବୁଡ଼ି କୌଣସି ପଦାର୍ଥ ବାହାର କଲା ଭଳି ଲୋକ ମଙ୍ଗଳ ଛଡ଼ା ଆଉ କେହି ନଥିଲେ ।

ଶେଠ୍‌ଜୀ ମଙ୍ଗଳକୁ ଅନୁରୋଧ କରିବାକୁ ସାହସ ପାଉ ନ ଥିଲେ । କିନ୍ତୁ ଗରାଟିର ମୂଲ୍ୟ କଥା ଚିନ୍ତା କରି ଶେଷକୁ ତା'ଙ୍କୁ ଅନୁରୋଧ କଲେ ତାହା ବାହାର କରି ଦେବା ପାଇଁ ।



ସେତେବେଳକୁ ସଞ୍ଜ । "ଶେଠ୍‌ଜୀ ! କାଲି ସକାଳେ ମୁଁ ବୁଡ଼ି ଆପଣଙ୍କ ଗରା ବାହାର କରିଦେବି । ନିଶ୍ଚିନ୍ତ ରହନ୍ତୁ ।" ମଙ୍ଗଳ କହିଲା ।

ରାତି ପାହିବା ପୂର୍ବରୁ ମଙ୍ଗଳ କୂଅରେ ପଶି ପିତଳ ଗରାଟି ବାହାର କରି ଆଣିଲା ଓ ଗୋଟାଏ ପୁରୁଣା ମାଟି ଗରା ପାଣିରେ ଡବାଇଦେଇ ଘରକୁ ଫେରିଆସିଲା ।

ସକାଳେ ଶେଠ୍‌ଜୀ ଆସି ପୁଣି ତାକୁ ଡାକିଲେ । ସେ ଏଥର ଯାଇ କୂଅରେ ବୁଡ଼ି ମାଟି ଗରାଟି ବାହାର କରି ଆଣିଲା । ଗରାଟିଏ ବାହାରିବାର ଦେଖି ଶେଠ୍‌ଜୀ ପ୍ରଥମେ ଖୁସୀ ହୋଇଗଲେ । କିନ୍ତୁ ତାହା ମାଟିଗରା ହୋଇ-ଥିବାର ଦେଖି ସେ କହିଲେ, "ଆରେ ଭାଇ, ଏଇଟା ଆଉ କାହାର ହୋଇଥିବ । ଆମର ପିତଳ ଗରା । ଦୟାକରି ଆଉ ଥରେ ଖୋଜ ।"

ମଙ୍ଗଳ ପୁଣି ଥରେ ପାଣିରେ ବୁଡ଼ସାରି କହିଲା, "ଶେଠ୍‌ଜୀ ! ତଳେ ଆଉ ଗରା ନାହିଁ । ଏ କୂଅର ପାଣି ପ୍ରଭାବରେ ପିତ୍ତଳ ମାଟି ହୋଇଯାଇଛି । ଆପଣଙ୍କୁ ଏ ପାଣିର ପ୍ରଭାବ କଥା ସବୁଠୁ ବେଶୀ ମାଲୁମ୍ ।"

ଏହାପରେ ମଙ୍ଗଳ ପାଣିରୁ ଉଠି ଘରକୁ ଚାଲିଗଲା । ଶେଠ ଦୁଇ ଚାରିଜଣ ଲୋକ ଲଗାଇ ସାରା କୂଅକୁ ଶୁଖାଇଦେବାକୁ ଉଦ୍ୟମ କରି-ବାରୁ ଗାଁର ଲୋକେ ତାଙ୍କୁ ଗାଳି ଗୁଲଜ କଲେ । ଶେଠ୍‌ଜୀ ସେଥିରୁ ନିବୃତ୍ତ ହେଲେ ।

ସାରାଦିନ ଶେଠ୍‌ଜୀ ଗମ୍ଭୀର ହୋଇ ରହିଲେ । ଜୀବନରେ ସେଭଳି ଶିକ୍ଷା ସେ ଆଉ କେବେ ପାଇ ନ ଥିଲେ । ସେ ଅସହାୟ ଅନୁଭବ କରି ସାରାଦିନ ମୁହଁ ମାରି ଘର ଭିତରେ ରହିଲେ । ମଙ୍ଗଳ ମଧ୍ୟ ଚୁପ୍‌ଚାପ୍ ରହିଲା ।

ରାତିରେ ସେ ଆସି ମଙ୍ଗଳକୁ ତା ପିତଳ ମୂର୍ତ୍ତି ଫେରାଇ ଦେଲେ । ମଙ୍ଗଳ ବିନା ବାକ୍ୟ-ବ୍ୟୟରେ ତାଙ୍କ ପିତଳ ଗରାଟି ଗୋଟାଏ ଗୋପନ ସ୍ଥାନରୁ ବାହାର କରି ଦେଇଦେଲା ।



# ଉପଯୁକ୍ତ ସମୟ

ଅବନ୍ତୀର ରାଜା ସୁବର୍ଣ୍ଣ ସେନଙ୍କ ଅଧୀନରେ ଜଣେ ସାମନ୍ତ ରାଜା ଥିଲେ । ନାମ ବୀରପାଳ । ଥରେ ବୀରପାଳ ନିଜ ରାଜ୍ୟକୁ ସ୍ୱାଧୀନ ବୋଲି ଘୋଷଣା କରି ସୁବର୍ଣ୍ଣ ସେନଙ୍କୁ କର ଦେବାକୁ ଅସ୍ୱୀକାର କଲେ । ରାଜା ମନ୍ତ୍ରୀଙ୍କୁ ଆଦେଶ ଦେଲେ, "ସୈନ୍ୟବାହିନୀ ପ୍ରସ୍ତୁତ କର । ବୀରପାଳର ରାଜ୍ୟ ଆକ୍ରମଣ କରିବାକୁ ହେବ ।"

"ମହାରାଜ ! ବର୍ତ୍ତମାନ ଆମ ରାଜ୍ୟର ବହୁ ଅଂଶରେ ନାନା ପ୍ରକାର ଅରାଜକତା ଦେଖା ଦେଇଛି । ତା' ଛଡ଼ା ଏ ବର୍ଷାଋତୁ ଯୁଦ୍ଧଯାତ୍ରା ପାଇଁ ଉପଯୁକ୍ତ ସମୟ ନୁହେଁ ।" ମନ୍ତ୍ରୀ କହିଲେ ।

"ଯୁଦ୍ଧ ପାଇଁ ପୁଣି ଉପଯୁକ୍ତ ସମୟ କ'ଣ ?" ରାଜା ତାଚ୍ଛଲ୍ୟ କରି କହିଲେ ।

ପର ଦିନ ରାଜା ବଗିଚାରେ ବୁଲୁ ବୁଲୁ ଦେଖିଲେ, ରାଜପୁତ୍ର ଗୋଟିଏ ଆମ୍ବ ଗଛରେ ପାଣି ଦେଉଛନ୍ତି ।

"ପୁଅ ! ବର୍ତ୍ତମାନ ବର୍ଷାଋତୁରେ ଗଛରେ ପାଣି ଦେବା କ'ଣ ଦରକାର ?" ସେ ପଚାରିଲେ ।

"ମୋର ଶୀଘ୍ର ଆମ୍ବ ଦରକାର !" ରାଜପୁତ୍ର କହିଲେ ।

"ଆରେ, ଉପଯୁକ୍ତ ସମୟ ଆଗରୁ କ'ଣ ଆମ୍ବ ଫଳିବ ?" ରାଜା ପଚାରିଲେ ।

"ଯଦି ଯୁଦ୍ଧ ପାଇଁ ଉପଯୁକ୍ତ ସମୟ ବୋଲି କିଛି ନାହିଁ, ଆମ୍ବ ଫଳିବା ପାଇଁ କାହିଁକି ଥିବ ?" ରାଜପୁତ୍ର ପଚାରିଲେ । ରାଜା ନିଜ ଭୁଲ ବୁଝିଲେ ।





# ପନ୍ଦରଦିନ !

ତାରା ସହ ଶିବରାମର ବିବାହ ହେବା ପରେ ତାରା ଶଶୁର ଘରକୁ ଆସି କିଛି ଦିନ ରହିବା ପରେ ତା ସାନ ଭାଇ ଆସି ତାକୁ ବାପ ଘରକୁ ନେଇ ଗଲା । ଭଣୋଇକୁ କହି ଗଲା, ପନ୍ଦର ଦିନ ପରେ ସେ ଯେମିତି ଯାଇ ସ୍ତ୍ରୀକୁ ନେଇ ଆସେ ।

ଶିବରାମ ଦିନ ଗଣୁଥାଏ । ଯେମିତି ପନ୍ଦର ଦିନ ଯାଇଛି, ସେ ଯାଇ ଶ୍ବଶୁର ଘରେ ହାଜର ହୋଇଗଲା । ତାକୁ ଶାଶୁ, ଶ୍ବଶୁର, ଶଳା ଓ ଶଳାଭାଉଜମାନେ ଯେମିତି ଆଦର କଲେ, ସେମିତି ଆଦର ସେ ଜୀବନରେ ପାଇ ନ ଥିଲା ।

"ସଙ୍ଗେସଙ୍ଗେ ଚାଲିଗଲେ ଚଳିବ ନାହିଁ । କେଇ ଦିନ ରହି ତା'ପରେ ତାରାକୁ ନେଇ ଯିବ ।" ଶାଶୁ କହିଲେ ।

"କେତେ ଦିନ ରହିବାକୁ ହେବ ?" ଶିବରାମ ସଙ୍କୋଚରେ ପଚାରିଲେ । କାରଣ ତେଣେ ଘରେ ତା'ର ଅନେକ କାମ ଥାଏ ।

"ବାପ, ଇଏତ ତୁମ ନିଜ ଘର । ପନ୍ଦର ଦିନ ରହିଯାଅ !" ଶାଶୁ କହିଲେ ।

ଶିବରାମ ଭାବିଲା, ସପ୍ତାହେ ରହିଲେ ଶାଶୁ ଶ୍ବଶୁର ଖୁସୀ ହେବେ ଓ ତାପରେ ସେ ଫେରିଯିବ ।

କିନ୍ତୁ ସେଠାକାର ଆଦର ଅଭ୍ୟର୍ଥନା ଭିତରେ ସପ୍ତାହେ କେବେ ବିତିଗଲା, ସେକଥା ତାର ହିଜ ରହିଲା ନାହିଁ । ସେ ମନେମନେ ଭାବୁଥାଏ, ସ୍ୱର୍ଗ ବୋଇଲେ ଶ୍ବଶୁର ଘର । କାମ ଦାମ କରିବା ଦରକାର ନାହିଁ । ଅନ୍ୟମାନେ ମୋ ପାଇଁ ଖଟୁଥିବେ । କ'ଣ ଖାଇବି, କେଉଁଠୁ ତାହା ଆସିବ, ସେସବୁ ଭାବିବା ଦରକାର ନାହିଁ । ଖାଇବା ସମୟକୁ ମୋତେ ନାନାବିଧ ଭଲ ଜିନିଷ ପରଷି ଦିଆଯିବ ଏବଂ ମୁଁ ଯେତେ ଖାଇଲେ ବି କମ୍ ଖାଇଲି ବୋଲି କୁହାହେଉଥିବ ।

ପନ୍ଦର ଦିନ ଚାଲିଗଲା । ଶିବରାମ ଜାଣି-

ବାରେ ଯେମିତି ମୋଟେ ପାଞ୍ଚଦିନ ଯାଇଛି ।

"ଫେରିବା କେବେ ?" ଥରେ ତାରା ପଚାରିଲା ।

ଶିବରାମ ହାଇ ମାରି ମୃଦୁ ହସି ଚୁପ୍ ରହିଲା ।

ତିନି ସପ୍ତାହ ବିତିଯିବା ପରେ ଦିନେ ଶିବରାମ ଦେଖିଲା, ଖାଇପିଇବା ପରେ ହାତ ମୁହଁ ଧୋଇବା ପାଇଁ ପାଣି ଦିଆ ହୋଇ ନାହିଁ ।

"ପାଣି କାହିଁ ?" ବୋଲି ପଚାରିବାରୁ ସାନ ଶଳା କୂଅ ଆଡ଼କୁ ହାତ ଦେଖାଇ ଦେଲେ ।

ଶାଶୁ ତ କହିଥିଲେ ଏଇଟା ତା ନିଜ ଘର । ତେଣୁ ଶିବରାମ ଯାଇ କୂଅରୁ ନିଜେ ପାଣି କାଢ଼ି ହାତ ମୁହଁ ଧୋଇଲା ଓ ତେଣିକି ପ୍ରତ୍ୟେକ ଥର ସେଇଆ କଲା ।

"ଘରେ ବସି କ'ଣ କରୁଥିବ ? ଚାଲ କ୍ଷେତ ଦେଖି ଆସିବ ।" ଶ୍ୱଶୁର କହିଲେ ଓ ସାଥିରେ ଶିବରାମକୁ ନେଇ କ୍ଷେତକୁ ଗଲେ । ବଡ଼ ଶଳା ସେଠାରେ ଧାନ ମାପୁଥାନ୍ତି ।

"କହୋ, ତୁମକୁ ଧାନ ମାପି ଆସେ ?" ଶଳା ଥଟ୍ଟା କଲା ଭଳି କଣ୍ଠରେ ପଚାରିଲା ।

"ନିଶ୍ଚୟ !" କହିଲା ଶିବରାମ ।

"ଦେଖିବା କେମିତି ମାପି ଜାଣ !" କହି ଶଳା ତା ହାତକୁ ତରାଜୁ ଦେଇଦେଲା । ପରେ ପରେ ଶଳା ଓ ଶ୍ୱଶୁର ଦୁହେଁ କୌଣସି ଜରୁରୀ କାମରେ ଦୁଇ ଦିଗକୁ ବାହାରିଗଲେ । ସମୁଦାୟ ଧାନ ଶିବରାମ ବସି ବସି ଓଜନ କଲା ଓ ଗାଡ଼ିରେ ଲଦି ଘରକୁ ଆଣିଲା ।

ଘରେ ଗାଡ଼ି ପହଞ୍ଚିବା ମାତ୍ରେ ଶ୍ୱଶୁର କହିଲେ, "ତୁମେ ଧାନ ଏଠାକୁ ଆଣିଲ କାହିଁକି ? ଇଏ ତ ବାଟେ ବାଟେ ସହରକୁ ବିକ୍ରି ପାଇଁ ଯିବା କଥା ।"



ବଡ଼ ଶଳା ଚୁପି ଚୁପି କହିଲା, "ଶିବରାମ ! ଇଏ ତ ତୁମ ନିଜ ଘର । ଆମେ ଯାହା କରିବା, ସେ କାମ କରିବାପାଇଁ ତୁମକୁ କହିବାକୁ ବି ସଙ୍କୋଚ କାହିଁକି କରିବା ? ସବୁଥର ମୁଁ ସହରକୁ ଯାଇ ଧାନ ବିକି କରେ । କିନ୍ତୁ ଏଥର ଘରେ ବହୁତ କାମ । ତୁମେ ଯାଇ ଏତିକି ବିକି କରି ଆସ । ଦରଦାମ ଧାର୍ଯ୍ୟହୋଇ ରହିଛି । ବେପାରୀର ଠିକଣା ଦେଉଛି । ଖାଲି ମାପିଦେଇ ଟଙ୍କା ଧରି ଆସିବା କଥା ।"

ଶିବରାମ ବାଧ ହୋଇ ଦାରୁଣ ଖରାରେ ଗାଡ଼ି ବୋଝେଇ ଧାନ ଧରି ସହରକୁ ଗଲା ।

ପର ଦିନ ହାଲିଆ ଓ ଭୋକିଲା ହୋଇ ଫେରିବା ବେଳକୁ ଶ୍ୱଶୁରଘରେ ତାଲା । ପଡ଼ୋଶୀମାନେ କହିଲେ, ରାମଲୀଳା ଦେଖିବା ପାଇଁ ସମସ୍ତେ ଅନ୍ୟ ଏକ ଗାଁକୁ ଯାଇଛନ୍ତି ।

ବିଚରା ଭାବିଥିଲା, ଗରମ ପାଣିରେ ଗାଧୋଇ ପାଦଧୋଇ, ପେଟେ ଖାଇ ଗଭୀର ନିଦରେ ଶୋଇପଡ଼ିବ । କିନ୍ତୁ ବର୍ତ୍ତମାନ ସାରା ରାତି ପିଣ୍ଡାରେ ଅଖିଆ ଅପିଆ ପଡ଼ି ରହିବାକୁ ହେଲା । ଭୋର ବେଳକୁ ଶ୍ୱଶୁରବଂଶ ଫେରିଲେ । ସାଥିରେ ଆସିଥାନ୍ତି ସେମାନଙ୍କ ବଡ଼ ଝିଅ ଓ ଜୁଆଇଁ । ଶିବରାମ ନିଜେ ରୋଷେଇ ଘରକୁ ଯାଇ ଗରମ ପାଣି ବରାଦ କଲା । ପାଣି ଗରମ ହେବାରୁ ସେ ବାଲ୍ଟିରେ ଧରି ପିଣ୍ଡା ଆଡ଼କୁ ବାହାରିଛି, ସାନ ଶଳା ତା ହାତରୁ ବାଲ୍ଟି ଛଡ଼ାଇନେଇ କହିଗଲା, "ବଡ଼ ଭିଣୋଇ ପରା ଆସି ପହଞ୍ଚିଛନ୍ତି ! ସେ ଗାଧୋଇବେ । ତୁମର ଦରକାର ତ ଆଉ ଥରେ ଗରମ କରିପାର !"

ଶିବରାମ କ୍ରୋଧରେ ଦାନ୍ତ କଡ଼ମଡ଼ କରି ତାରାକୁ ଯାଇ କହିଲା, "କ'ଣ, ବଡ଼ ଜୁଆଇଁ ଜୁଆଇଁ, ମୁଁ ଜୁଆଇଁ ନୁହେଁ ?"

"ବଡ଼ ଜୁଆଇଁ ଆସି ଦୁଇ ଦିନ ରହି ଚାଲି ଯା'ନ୍ତି । ଆଉ ତୁମେ ?" ତାରା କାନ୍ଦି କାନ୍ଦି ହୋଇ କହିଲା ।

"ମୋତେ ଶାଶୁ ପନ୍ଦର ଦିନ ରହିବାକୁ କହିବାରୁ ସିନା ରହିଛି !" ଶିବରାମ କହିଲା ।

"କିନ୍ତୁ ଆସି ମାସେ ହେଲାଣି ଯେ !" ତାରା ଚେତାଇ ଦେଲା ।

ଶିବରାମ ଚୁପ ହୋଇଗଲା । ସେଇ ଦିନ ତାରାକୁ ଧରି ସେ ଘରକୁ ଫେରିଗଲା ।





# ବୀର ହନୁମାନ

ଶ୍ରୀରାମଙ୍କ ସ୍ମୃତିରେ ନିମଗ୍ନ ଓ ତପନିରତ ରହିଥିଲେ ହନୁମାନ । ଗନ୍ଧମାଦନ ପର୍ବତ ଉପରେ ସେ ନୀରବରେ ସମାସୀନ ଥିଲେ ଦୀର୍ଘକାଳ ।

ହଠାତ୍ ବ୍ରହ୍ମା ତାଙ୍କ ଆଗରେ ଆବିର୍ଭୂତ ହୋଇ କହିଲେ, "ହନୁମାନ ! କଳିଯୁଗ ଆଗତ ପ୍ରାୟ । କଳିଯୁଗରେ ତୁମକୁ ଏ ପୃଥିବୀର ବାତାବରଣ ସୁହାଇବ ନାହିଁ । ତେଣୁ ତୁମେ କ୍ଷୀରସାଗର ଅଭିମୁଖେ ଚାଲିଯାଅ ।"

ଏହି ବାର୍ତ୍ତା ଦେଇ ବ୍ରହ୍ମା ଅଦୃଶ୍ୟ ହୋଇଗଲେ ।

ତେଣେ କ୍ଷୀରସାଗରରେ ଶାୟିତ ବିଷ୍ଣୁଙ୍କ ପାଖରେ ଦୁଇ ଭକ୍ତ ସଙ୍ଗୀତ ପରିବେଷଣ କରୁଛନ୍ତି । ସେ ଦୁହେଁ ହେଲେ ନାରଦ ଓ ତୁମ୍ବୁର । ନାରଦ ନିଜର 'ମହତୀ' ବୀଣା ବାଦନ କରି ସର୍ବଦା ଭକ୍ତିପ୍ରଧାନ ଗୀତ ବୋଲୁଥାନ୍ତି । ତୁମ୍ବୁର 'ହୟଗ୍ରୀବା' ବୀଣାରେ ମୃଦଙ୍ଗର ଧ୍ୱନି ମଧ୍ୟ ସୃଷ୍ଟି କରିପାରୁଥାନ୍ତି, ଏବଂ ତାଳପ୍ରଧାନ ଶାସ୍ତ୍ରୀୟ ସଙ୍ଗୀତ ବୋଲୁଥା'ନ୍ତି ।

ଦୁଇ ସଙ୍ଗୀତ-ବିଶାରଦ ନିଜକୁ ଅନ୍ୟଠାରୁ ବଡ଼ ବୋଲି ମନେ କରି ପରସ୍ପର ଘୋର ଦ୍ୱେଷ ପୋଷଣ କରୁଥାନ୍ତି ।

ଥରେ ଥରେ ସେମାନଙ୍କ ବିବାଦ ଏତେ ଦୂର ବଢ଼ିଯାଉଥାଏ ଯେ ଦୁହେଁ ନିଜ ନିଜ ବୀଣାକୁ ଗଦା ପରି ଉତ୍ତୋଳନ କରି ପରସ୍ପର ଆଡ଼କୁ ଝପଟି ଯାଉଥାନ୍ତି । ମଧ୍ୟେ ମଧ୍ୟେ ବିଷ୍ଣୁଙ୍କୁ



କହୁଥାନ୍ତି, "ଭଗବାନ୍ ! ଆପଣହିଁ କହିଦିଅନ୍ତୁ, ଆମ ଦୁଇଜଣଙ୍କ ଭିତରେ ବାସ୍ତବରେ ବଡ଼ ସଙ୍ଗୀତଜ୍ଞ କିଏ ?"

ବିଷ୍ଣୁ ସେମାନଙ୍କୁ ଶାନ୍ତ କରିବାର ଚେଷ୍ଟା କରି ମଧ୍ୟେ ମଧ୍ୟେ ଯୋଗନିଦ୍ରାରେ ନିମଗ୍ନ ହୋଇଯାଉଥାନ୍ତି । କିନ୍ତୁ ସେଥିରେ ବି ତାଙ୍କର ଶାନ୍ତି ନ ଥିଲା । କାରଣ ଦୁଇ ଭକ୍ତ ତାଙ୍କ କାନ ପାଖକୁ ଯାଇ କହୁଥାନ୍ତି, "ମହାପ୍ରଭୁ ! ଥରେ ଆମ ପ୍ରଶ୍ନର ଉତ୍ତର ଦେଇପକାନ୍ତୁ । ତେଣିକି ନିଶ୍ଚିନ୍ତରେ ଶୋଇରହିବେ । ଆପଣଙ୍କ ମତ ନ ଜାଣିବା ଯାଏ ଆମେ ସ୍ଥିର ହୋଇ ରହିପାରିବୁ ନାହିଁ ।"

"ଦେଖ ମୋତେ ଏ ପ୍ରଶ୍ନ ପଚାରି ଲାଭ ନାହିଁ । ଗନ୍ଧମାଦନ ପର୍ବତ ଉପରେ ରହିଛନ୍ତି ଜଣେ ବାନର । ତାଙ୍କୁ ଯାଇ କୁହ କି ରାମଚନ୍ଦ୍ର ତାଙ୍କୁ ସ୍ମରଣ କରୁଛନ୍ତି । ସେ ଆସିଲେ ତୁମମାନଙ୍କ ବିବାଦ ମୀମାଂସା ହୋଇଯିବ ।"

ତୁମ୍ବୁର ଓ ନାରଦ ବିଷ୍ଣୁଙ୍କ ପରାମର୍ଶ ଶୁଣି ବିସ୍ମୟରେ ହତବାକ୍ ହୋଇଗଲେ । ଦୁହେଁ ଦୁହିଙ୍କ ଆଡ଼କୁ ଥରେ ଥରେ ବକ୍ର ଦୃଷ୍ଟିରେ ଚାହିଁ ଏକତ୍ର ଗନ୍ଧମାଦନରେ ଯାଇ ଉପସ୍ଥିତ ହେଲେ ।

ହନୁମାନ ଥିଲେ ଧ୍ୟାନମଗ୍ନ । ସେ ଦୁହେଁ ତାଙ୍କ ପାଖରେ ଠିଆହୋଇ ରହିଲେ । ହନୁମାନ ଧୀରେ ଧୀରେ ଉଚ୍ଚାରଣ କରୁଥିଲେ ରାମ ନାମ ।

ସେ ନାମ ଏଡ଼େ ଅପୂର୍ବ ମାଧୁର୍ଯ୍ୟ-ମଣ୍ଡିତ ହୋଇ ଉଚ୍ଚାରିତ ହେଉଥାଏ ଯେ ମନେ ହେଉଥାଏ ଯେପରିକି ସେ ଧ୍ୱନିରେ ହୋଇଛି ସର୍ବରାଗ-ସମନ୍ୱୟ !

ତୁମ୍ବୁର ଓ ନାରଦ ମୁଗ୍ଧ ହୋଇ ଠିଆହୋଇ ରହିଥାନ୍ତି ଓ ସେ ଦିବ୍ୟ ଧ୍ୱନି ହୃଦୟ ପୂରାଇ ଶୁଣୁଥାନ୍ତି । ସେମାନେ ଯେ ହନୁମାନଙ୍କୁ ଡାକି ନେଇଯିବାକୁ ଆସିଥିଲେ ସେ କଥା ଭୁଲିଯାଇଥାନ୍ତି । ସେମାନେ ହୃଦୟଙ୍ଗମ କଲେ ଯେ ହନୁମାନ କେବଳ ମହାନ୍ ସଙ୍ଗୀତଜ୍ଞ ନୁହନ୍ତି, ସେ ଜଣେ ନାଦୋପାସକ । ସେ ଦୁହେଁ କେତେ-

ବେଳେ ହନୁମାନଙ୍କ କଣ୍ଠରେ କଣ୍ଠ ମିଳାଇ ରାମନାମ ଜପିବାକୁ ଆରମ୍ଭ କରିଦେଇଥିଲେ, ସେ କଥା ଜାଣି ନ ଥିଲେ ।

ହନୁମାନଙ୍କ ଧ୍ୱନି ସହ ସେ ଦୁହିଁଙ୍କ ଧ୍ୱନି ମିଶିବାରୁ ଅପଶ୍ରୁତି ଓ ଅପସ୍ୱର ଘଟିଲା । ଫଳରେ ହନୁମାନ ଆଖିଖୋଲି ଆଶ୍ଚର୍ଯ୍ୟ ହୋଇ ଅନାଇଲେ । ସେତେବେଳେ ତନ୍ମୟ ହୋଇ ନାରଦ ତୁମ୍ବୁରୁ ରାମନାମ ଜପୁଥାନ୍ତି । ହନୁମାନ ଚଟାପଟ୍ ଉଠିପଡ଼ି ସେମାନଙ୍କ ପାଦସ୍ପର୍ଶ କଲେ ।

ତୁମ୍ବୁରୁ ଓ ନାରଦ ହନୁମାନଙ୍କ କରସ୍ପର୍ଶରେ ସଚେତନ ହୋଇଉଠିଲେ ଓ ପାଦ ଘୁଞ୍ଚାଇନେଇ କହିଲେ, "ଇଏ କ'ଣ କରୁଛନ୍ତି, ହେ ମହାନୁଭବ ! ଆପଣଙ୍କ ଭଳି ମହାନ୍ ଭକ୍ତ ଆମ ପାଦ ସ୍ପର୍ଶ କରିବା ଅତ୍ୟନ୍ତ ଅନୁଚିତ । ଆପଣ ଆମକୁ ବୋଧ ହୁଏ ଜାଣିନାହାନ୍ତି । ଆମେ ନାରଦ ଓ ତୁମ୍ବୁରୁ ।"

"ଆପଣ ଯିଏ ହୁଅନ୍ତୁ, ଆପଣ ରାମ-ଭକ୍ତ । ଅତଏବ ମୋର ଆରାଧ୍ୟ । ରାମ-ଭକ୍ତ ମାତ୍ରେ ମୋର ପୂଜ୍ୟ । ସେମାନଙ୍କୁ ଦେଖିଲେ ମୋ ହୃଦୟ ଆନନ୍ଦରେ ଉଚ୍ଛୁଳି ଉଠେ ।" ହନୁମାନ କହିଲେ । ତୁମ୍ବୁରୁ ଓ ନାରଦ ଦୀର୍ଘକାଳ ହତବାକ୍ ହୋଇ କେବଳ ହନୁମାନଙ୍କ ଆଡ଼କୁ ଅନାଇ ରହିଲେ । ତା'ପରେ ସେଠାକୁ ଆସିବାର କାରଣ ମନେ ପଡ଼ିବାରୁ ତୁମ୍ବୁରୁ କହିଲେ, "ମହାନୁଭବ ! ଆପଣଙ୍କୁ ରାମ ଡାକୁଛନ୍ତି । ସେ ବର୍ତ୍ତମାନ କ୍ଷୀରସାଗରରେ ଶଯ୍ୟମାନ । ଆପଣ





ଆମ ସହିତ ସେଠାକୁ ଚାଲନ୍ତୁ !"

"ସେଠାରେ ଆପଣ ତାଙ୍କ ସେବାରତା ସୀତାଙ୍କୁ ମଧ୍ୟ ଦେଖିବେ । ଆଉ ଦେଖିବେ ଲକ୍ଷ୍ମଣ ତଥା ଭରତ ଓ ଶତ୍ରୁଘ୍ନଙ୍କୁ ।" ନାରଦ ଜଣାଇଲେ ।

ହନୁମାନ ପୁଲକିତ ହୋଇଉଠିଲେ । ରାମଙ୍କ ଆହ୍ୱାନ ତାଙ୍କୁ ଆଉସବୁ ଭୁଲାଇଦେଲା । ସେ ଯାଇ ପହଞ୍ଚିଲେ କ୍ଷୀରସାଗରରେ । ଗରୁଡ଼ ଆଗେଇ ଆସି ତାଙ୍କୁ ପାଛୋଟି ନେଲେ । ସେ ଯାଇ ଅନ୍ତରେ ବିଷ୍ଣୁଙ୍କ ଆଗରେ ଦଣ୍ଡାୟମାନ ହେଲେ ।

ବିଷ୍ଣୁଙ୍କୁ ଅବଲୋକନ କରି ହନୁମାନ ତାଙ୍କୁ ରାମ ରୂପେହିଁ ଦେଖିଲେ । ରାମ ଯେ ବିଷ୍ଣୁଙ୍କରହିଁ ଅବତାର ଥିଲେ, ସେ କଥା ସେ ଉପଲବ୍ଧି କଲେ ।

ହନୁମାନ ବିନମ୍ର ଭାବରେ ବିଷ୍ଣୁଙ୍କୁ ପ୍ରଣିପାତ କଲେ ।

ବିଷ୍ଣୁ କହିଲେ, "ହନୁମାନ ! ତୁମ୍ଭର ଓ ନାରଦଙ୍କ ଭିତରେ ଲାଗିଛି ପ୍ରବଳ ବିବାଦ । ସେଥିପାଇଁ ତୁମକୁ ଡକାଇଲି । ତୁମେ ସେ ଦୁହିଙ୍କ ଭିତରେ କିଏ ବଡ଼ ସଙ୍ଗୀତଜ୍ଞ, ସେ କଥା ନିରୂପଣ କରିବି । ତେବେ, ତାହିଁ ପୂର୍ବରୁ, ନିଜେ ଥରେ ଗୀତ ବୋଲି ମୋତେ ଶୁଣାଅ ।"

ହନୁମାନ ବିନୟ ଭରେ କହିଲେ, "ପ୍ରଭୁ ! ସଙ୍ଗୀତ କିଏ, ମୁଁ କିଏ ! ଦୁଇଜଣ ମହାନ୍ ସଙ୍ଗୀତଜ୍ଞଙ୍କ ଆଗରେ ଗୀତ ଗାଇବାର ଧୃଷ୍ଟତା ମୁଁ କରିବି କିପରି ?"

"ହନୁମାନ ! ତୁମର ଗୋଟିଏ ବଡ଼ ଦୋଷ ହେଲା, ତୁମେ ନିଜ ପ୍ରତିଭା ଚିହ୍ନିଲ ନାହିଁ । ତୁମ ଭିତରେ କି ଶକ୍ତି ରହିଛି, ସେ କଥା ଅନ୍ୟ କେହି କହିଦେଲେ ଯାଇ ତୁମେ ସେ ବିଷୟରେ ଚେତିବ । ତୁମେ ଏକଦା ସୂର୍ଯ୍ୟଦେବଙ୍କ ସହ ତାଳ ରଖି ଆକାଶ ପରିକ୍ରମା କରି ସମସ୍ତ ବିଦ୍ୟାରେ ଦକ୍ଷତା ପ୍ରାପ୍ତ କରିଥିଲ । ସେ କଥା ଭୁଲିଯାଉଛ କାହିଁକି ? ମୋର ଆଦେଶ, ତୁମେ ଗୀତ ବୋଲ !" ବିଷ୍ଣୁ କହିଲେ ।

ହନୁମାନ ବିଷ୍ଣୁଙ୍କ ଆଦେଶ ଶିରୋଧାର୍ଯ୍ୟ କରି ନିଜ କଣ୍ଠ ଖୋଲିଲେ । ବିଷ୍ଣୁଙ୍କ ପ୍ରିୟ 'ହିନ୍ଦୋଳ' ରାଗରେ ସେ ପ୍ରଥମେ ପରିବେଷଣ କଲେ । ତୁମ୍ବୁରୁ ଓ ନାରଦଙ୍କ ବିସ୍ମୟ କହିଲେ ନ ସରେ । ସେମାନେ ପ୍ରସ୍ତର ମୂର୍ତ୍ତିବତ୍ ବସି ରହିଥାନ୍ତି ।

ହନୁମାନ ହିନ୍ଦୋଳ ରାଗରୁ କ୍ରମେ ବୈଜୟନ୍ତୀ ରାଗକୁ ପରିବର୍ତ୍ତିତ କଲେ ଓ 'ରାମ' ନାମ ଗାନ କଲେ । ଯୋଡ଼ିଏ ମାତ୍ର ଅକ୍ଷର 'ରାମ'କୁ ସେ ସ୍ୱରଭେଦ ସହିତ ଏକ ପରେ ଏକ ବହୁବିଧ ତାଳରେ ଅବର୍ଣ୍ଣନୀୟ ମାଧୁର୍ଯ୍ୟ ସହକାରେ ଯେତେବେଳେ ବୋଲିବାକୁ ଲାଗିଲେ, ସେତେବେଳେ କ୍ଷୀରସାଗରରେ ସୃଷ୍ଟି ହେଲା ଅପୂର୍ବ ତରଙ୍ଗ । ଅନାସ୍ୱାଦିତ ଆନନ୍ଦରେ ନାଚିଉଠିଲା ଶ୍ରୋତାମାନଙ୍କ ହୃଦୟ । ତୁମ୍ବୁରୁ ଓ ନାରଦ ଗଭୀର ଭକ୍ତିର ଅନୁଭୂତି ଲାଭ କଲେ ।

ହନୁମାନ ରାଗାଳାପ କରୁ କରୁ ଯେତେବେଳେ ଭାବର ଚରମରେ ପହଞ୍ଚିଲେ, ସେତେବେଳେ ମନେ ହେଲା କ୍ଷୀରସାଗରର ତରଙ୍ଗ ଯେପରି ନକ୍ଷତ୍ରସ୍ପର୍ଶ କରିବ ! ଶେଷନାଗଙ୍କ ସହସ୍ର ଫଣା ଉଦ୍‌ବେଳିତ ହୋଇଉଠିଲା ।

ହନୁମାନ ମନ୍ଦ ସ୍ୱରକୁ ଅବତରଣ କରି 'ଦେବଗାନ୍ଧାର' ରାଗରେ ଆଳାପ କରିବାକୁ ଲାଗିଲେ । ଶାନ୍ତରସ-ପ୍ରଧାନ ଏ ରାଗର ପ୍ରଭାବରେ କ୍ଷୀରସାଗର କ୍ରମଶଃ ଘନୀଭୂତ ହୋଇଆସିଲା । ନାରଦଙ୍କ 'ମହତୀ ବୀଣା' ଓ ତୁମ୍ବୁରୁଙ୍କ 'ହୟଗ୍ରୀବା' ବୀଣା ସେ ଜମାଟ ସାଗର ଭିତରେ ଆବଦ୍ଧ ହୋଇ ରହିଗଲେ ।




ବିଷ୍ଣୁ ହନୁମାନଙ୍କୁ ସଙ୍ଗୀତ ବନ୍ଦ କରିବାକୁ ସଙ୍କେତ ଦେଲେ । ହନୁମାନ ଗାୟନରୁ କ୍ଷାନ୍ତ ହୁଅନ୍ତେ ନାରଦ ଓ ତୁମ୍ବୁରୁ ନିଜ ନିଜ ବୀଣା ଆଡ଼କୁ ଦୃଷ୍ଟିପାତ କଲେ ।

"ନାରଦ ! ତୁମ୍ବୁରୁ ! ତୁମେ ଦୁହେଁ ନିଜ ନିଜ ସଙ୍ଗୀତ ପ୍ରଭାବରେ ସାଗର ଦ୍ରବୀଭୂତ କରି ବୀଣାଟିମାନ ଉଦ୍ଧାର କର ।" ବିଷ୍ଣୁ ନିର୍ଦ୍ଦେଶ ଦେଲେ ।



ନାରଦଙ୍କ ଭକ୍ତିପ୍ରଧାନ ସଙ୍ଗୀତ ଓ ତୁମ୍ବୁରଙ୍କ ଶାସ୍ତ୍ରୀୟ ସଙ୍ଗୀତ ଦ୍ୱାରା କ୍ଷୀରସାଗର କିନ୍ତୁ ଦ୍ରବୀଭୂତ ହେଲା ନାହିଁ । ଦୁଇ ଗାୟକ ଲଜ୍ଜାରେ ନତମସ୍ତକ ହେଲେ ।

ଏହାପରେ ବିଷ୍ଣୁଙ୍କ ନିର୍ଦ୍ଦେଶରେ ହନୁମାନ ଭୂପାଳ, ବସନ୍ତ, ଝିଞ୍ଜୋଟି, ଦୀପକ ଇତ୍ୟାଦି ରାଗରେ ରାମନାମ ଗାନ କଲେ । ରହୁଁ ରହୁଁ ରାଗ ରାଗିଣୀମାନେ ରୂପ ପରିଗ୍ରହ କରି ନୃତ୍ୟ କରିବାକୁ ଲାଗିଲେ ।

ହନୁମାନଙ୍କ ସଙ୍ଗୀତ ସ୍ୱୟଂ ଶିବଙ୍କୁ ସେଠାକୁ ଆକର୍ଷିତ କରି ନେଇଆସିଲା । ସେ ଡମ୍ବରୁ ବଜାଇ ତାଣ୍ଡବ ନୃତ୍ୟ କରୁ କରୁ ଆସି ପହଞ୍ଚିଲେ । ତାଙ୍କୁ ଅନୁସରଣ କରି ପହଞ୍ଚିଲେ ପାର୍ବତୀ, ଗଣପତି ଓ ପ୍ରମଥଗଣ । ବ୍ରହ୍ମା ପଦ୍ମାସନରୁ ଅବତରଣ କରି ଆସି ପହଞ୍ଚିଲେ । ତାଙ୍କ ସହ ଆସିଲେ ବୀଣାବାଦନରତା ସରସ୍ୱତୀ । ଇନ୍ଦ୍ର ଆଦି ଦେବତାଗଣ ବି ଆସି ପହଞ୍ଚିଲେ ।

କ୍ଷୀରସାଗର ଏକ ବିଶାଳ ବିବାହ ବେଦୀ ରୂପେ ପ୍ରତୀୟମାନ ହେଲା । ହଠାତ୍ ହନୁମାନଙ୍କ ଆଖିରେ ଲକ୍ଷ୍ମୀ ଓ ନାରାୟଣ ବର ଓ ବଧୂ ଭଳି ଦେଖାଗଲେ । ହନୁମାନ ଅନୁଭବ କଲେ ରାମ ସୀତା ବିବାହ ବେଳେ ସେହିପରି ଦେଖାଯାଇଥିବେ । ସେ ଦୃଶ୍ୟ ଦେଖିବା ନିମନ୍ତେ ତାଙ୍କର ବହୁ କାଳରୁ ଅଭିଳାଷ ଥିଲା ।

କ୍ଷୀରସାଗର ପୁଣି ଦ୍ରବୀଭୂତ ହେବାରୁ ତୁମ୍ବୁର ନାରଦ ନିଜ ନିଜ ବୀଣା ଉଦ୍ଧାର କଲେ ।

ସରସ୍ୱତୀ କହିଲେ, "ହନୁମାନଙ୍କ ସଙ୍ଗୀତ ରୀତି ହନୁମଦ୍‌ଗାନ ନାମରେ ଚିରକାଳ ବିଖ୍ୟାତ ରହିବ । ପଣ୍ଡିତଙ୍କଠାରୁ ଆରମ୍ଭ କରି ପାମର ଯାଏ ସମସ୍ତଙ୍କ ହୃଦୟକୁ ସମାନ ଭାବରେ ଉଦ୍‌ବେଳିତ କରିବ । ନାରଦଙ୍କ ସଙ୍ଗୀତ ଭାବ-ପ୍ରଧାନ । ତୁମ୍ବୁରଙ୍କ ସଙ୍ଗୀତ ତାଳ-ପ୍ରଧାନ । ଭାବ ଓ ତାଳ ଭିତରେ ସମନ୍ୱୟ ଆଣିଦିଏ ରାଗ । ଭାବ ତାଳ, ଓ ରାଗ ତିନି ଗୁଣହିଁ ଅପରିହାର୍ଯ୍ୟ; କିନ୍ତୁ ରାଗ ସଙ୍ଗୀତର ପ୍ରାଣସ୍ୱରୂପ । ହୃଦୟ ଉପରେ ତାହାର ପ୍ରଭାବ ସବୁଠାରୁ ବେଶୀ ।

ହନୁମଦ୍‌ଗାନ ରାଗପ୍ରଧାନ ହୋଇ ସର୍ବଦା ଜନ-ରଞ୍ଜକ ହେଉଥିବ ।

ବ୍ରହ୍ମା ଆଗେଇଆସି କହିଲେ, "ହନୁମାନ ! ତୁମେ ନିଷ୍କାମ ଭାବରେ ତପ କରିଛ । ତୁମ ତପସ୍ୟାର ଯେପରି ତୁଳନା ନାହିଁ, ସେହିପରି ବ୍ରହ୍ମାସନଠାରୁ ବଡ଼ ଆସନ ନାହିଁ । ତୁମେହିଁ ଭବିଷ୍ୟତର ବ୍ରହ୍ମା । ରାମନାମହିଁ ତୁମକୁ ଏ ପଦ ଆଣି ଦେଇଛି । ଆଗାମୀ କଳ୍ପରେ ତୁମରି ଦ୍ୱାରା ସୃଷ୍ଟି ଉତ୍ପନ୍ନ ହେବ ।"

ଏହାପରେ ଶିବ ଆଗେଇଆସି କହିଲେ, "ହନୁମାନ ! ଏ ବ୍ରହ୍ମାଙ୍କ ସୃଷ୍ଟିରେ ଉତ୍ତମ ଲୋକଙ୍କ ଅପେକ୍ଷା ଦୁଷ୍ଟ ଲୋକହିଁ ଅଧିକ ସଂଖ୍ୟାରେ ଜନ୍ମ ହୋଇଛନ୍ତି, ହେଉଛନ୍ତି, ଏବଂ ହେବେ । କାରଣ ଏ ବ୍ରହ୍ମା ସ୍ୱୟଂସୃଷ୍ଟ ବ୍ରହ୍ମା । ମଣିଷ ସହିତ ଏହାଙ୍କର ସମ୍ପର୍କ ବିଶେଷ ନାହିଁ । ମଣିଷ ଯିବନେ ପୂର୍ଣ୍ଣାଙ୍ଗ ହେବ, ଏହାଙ୍କର ସେ ବିଶେଷ ଆସ୍ଥା ନାହିଁ । ତୁମ କଥା ସ୍ୱତନ୍ତ୍ର । ତୁମେ ବିଷ୍ଣୁଙ୍କର ମାନବ ରୂପ ରାମଙ୍କୁ ଚିରକାଳ ଆରାଧନା କରିଆସିଛ । ତେଣୁ ତୁମ ସୃଷ୍ଟିରେ ରାମଙ୍କ ଭଳି ପୂର୍ଣ୍ଣାଙ୍ଗ ମାନବ, ସୀତାଙ୍କ ଭଳି ଦିବ୍ୟ ମାନବୀ, ଲକ୍ଷ୍ମଣଙ୍କ ଭଳି ସତ୍ୟନିଷ୍ଠ ଭ୍ରାତା-ମାନେ ସମ୍ଭବ ହେବେ । ଆପାତତଃ ତୁମେ ବିଷ୍ଣୁଙ୍କ ସାନ୍ନିଧ୍ୟରେ ରହିଥାଅ ।"

ବ୍ରହ୍ମା ପୁଣି କହିଲେ, "ହେ ହନୁମାନ ! ଶିବ ଯାହା କହିଲେ, ତାହା ଠିକ୍ । ଭଲ ମଣିଷଙ୍କ ଭିତରେ ଥୋକାଏ ମନ୍ଦ ଲୋକ ରହିଲେହିଁ ସମସ୍ତେ ମନ୍ଦ ରାସ୍ତାରେ ଯିବାକୁ ପ୍ରଭାବିତ ହୁଅନ୍ତି । ଏ ସ୍ଥିତିର ଅନ୍ତ ହେବ ତୁମ ସୃଷ୍ଟିରେ । ଆଗାମୀ ବ୍ରହ୍ମକଳ୍ପରେ ବିଷ୍ଣୁଙ୍କ ନାଭିରୁ ଏକ ନୂତନ ବ୍ରହ୍ମକମଳ ବିକଶିତ ହେବ । ସେ ପଦ୍ମାସନକୁ ତୁମେ ବ୍ରହ୍ମାରୂପେ ଅଳଙ୍କୃତ କରିବ । ତୁମେ ଭାବି କାଳର ସ୍ରଷ୍ଟା ।"

ଏହାପରେ ସମସ୍ତେ ହନୁମାନଙ୍କୁ ମଙ୍ଗଳ ଗାନ କରିବାକୁ ଅନୁରୋଧ କଲେ । ହନୁମାନ ଶ୍ରୀରାମଙ୍କୁ ସ୍ତୁତି କରି ଏକ ମଙ୍ଗଳ ଗାନ କଲେ ।

ହନୁମାନ ନାରଦ, ତୁମ୍ବୁରୁ ଓ ଗରୁଡ଼ଙ୍କ ସହ କ୍ଷୀରସାଗରରେ ରହି ଲକ୍ଷ୍ମୀନାରାୟଣଙ୍କୁ ସୀତା-ରାମ ରୂପେ ସେବା କରିବାକୁ ଲାଗିଲେ ।

ହନୁମାନ ଚିରଞ୍ଜୀବୀ । ସେ ଭବିଷ୍ୟ-ବ୍ରହ୍ମା ।

(ସମାପ୍ତ)





## ଉତଙ୍କର ଅଭିଯାନ

ମହର୍ଷି ବେଦଙ୍କର ଜଣେ ଯୋଗ୍ୟ ଶିଷ୍ୟ ଥିଲେ ଉତଙ୍କ । ଶିକ୍ଷା ଶେଷ ହୁଅନ୍ତେ ଉତଙ୍କ ଗୁରୁଦକ୍ଷିଣା ଦେବାକୁ ଚାହିଁଲେ । ଗୁରୁ ତାଙ୍କୁ ନିଜ ପତ୍ନୀଙ୍କ ପାଖକୁ ପଠାଇ ଦେଲେ ।



ଗୁରୁ-ପତ୍ନୀ କହିଲେ ତାଙ୍କର ଲୋଡ଼ା ରାଜା ପୌଷ୍ୟଙ୍କ ମହିଷୀ ଧାରଣ କରିଥିବା ହଳେ ଅମୂଲ୍ୟ କର୍ଣ୍ଣ-ଭୂଷଣ । ଉତଙ୍କ ଯାଇ ପୌଷ୍ୟଙ୍କ ରାଣୀଙ୍କୁ ଅନୁରୋଧ କରନ୍ତେ ରାଣୀ ଅଳଙ୍କାର ହଳକ ଦେଇ ଦେଲେ; ସେ ଅଳଙ୍କାର ଉପରେ ସର୍ପ-ରାଜ ତକ୍ଷକର ଲୋଭ ଅଛି ବୋଲି ସତର୍କ କରିଦେଲେ ମଧ୍ୟ ।



ଗୁରୁଙ୍କ ଆଶ୍ରମକୁ ପ୍ରତ୍ୟାବର୍ତ୍ତନ ପଥରେ ଉତଙ୍କ ସ୍ନାନ ପାଇଁ ଗୋଟିଏ ସରୋବରରେ ପଶିବା ବେଳେ ଖଣ୍ଡିଏ ପଥର ଉପରେ ଅଳଙ୍କାର ହଳକ ଥୋଇଦେଲେ । ହଠାତ୍ ଗୋଟାଏ ଉଲଗ୍ନ ବୈରାଗୀ କାହୁଁ ଆସି ସେ ହଳକ ଉଠାଇ ନେଇ ଦୌଡ଼ି ପଳାଇଲା । ଉତଙ୍କ ଦୌଡ଼ିଲେ ତା' ପଛରେ ।



ଉତଙ୍କ ଲୋକଟିକୁ ଧରି ପକାଇବା ମାତ୍ରେ ସେ ଏକ ସାପରେ ରୂପାନ୍ତରିତ ହୋଇ ତାଙ୍କ ହାତରୁ ଖସିଗଲା ଓ ଗୋଟାଏ ବିଲ ଭିତରେ ଅଦୃଶ୍ୟ ହୋଇଗଲା । ଉତଙ୍କ ବୁଝିଲେ ଯେ ସେ ବୈରାଗୀ ଆଉ କେହି ନୁହେଁ, ଛଦ୍ମବେଶୀ ତକ୍ଷକ ।



ଉତଙ୍କ ତକ୍ଷକର ସନ୍ଧାନରେ ପାତାଳ-ପୁରୀକୁ ଯିବା ପାଇଁ ବିଲଟି ଖୋଳିବାକୁ ଲଗିଲେ । କିନ୍ତୁ ଗୋଟିଏ ବାଡ଼ି ଦ୍ୱାରା ଜଣେ ମଣିଷ କେବେ ପାତାଳପୁରୀ ଯାଏ ବାଟ ଖୋଳିପାରେ ? ସେ କ୍ରମେ କ୍ଲାନ୍ତ ହୋଇପଡ଼ିଲେ ।



ସେ ଇନ୍ଦ୍ରଙ୍କୁ ପ୍ରାର୍ଥନା କଲେ । ଇନ୍ଦ୍ର ପ୍ରାର୍ଥନାର ଉତ୍ତରରେ ନିଜ ବଜ୍ର ଦ୍ୱାରା ବାରମ୍ବାର ସେଠାରେ ଭୂମିରେ ଆଘାତ କରିବାରୁ ଅବଶେଷରେ ପାତାଳପୁରୀ ଯାଏ ପଥ ଖୋଳିଗଲା ।

ଉତଙ୍କ ପାତାଳପୁରୀରେ ପହଞ୍ଚିଲେ । ସେଠାରେ ସେ ଦୁନିଆ ଜାପର ଗୃଳଛି ତା'ର ବହୁ ରହସ୍ୟ ଜ୍ଞାତ ହେଲେ; ଦୁଇ ନାରୀ ଖଣ୍ଡିଏ ଲୁଗା ବୁଣୁଥିବାର ସେ ଦେଖିଲେ । ଜଣକ ହାତରେ ଥାଏ କଳା ସୂତା; ଅନ୍ୟଟି ହାତରେ ଧଳା ସୂତା । ନାରୀ ଦୁଇଜଣ ହେଲେ ଜନ୍ମୃତ । କଳା ସୂତା ରାତ ଓ ଧଳା ସୂତା ଦିନ ।





ସେ ଆହୁରି ଦେଖିଲେ, ଛଅଜଣ ଯୁବକ ଗୋଟାଏ ବିରାଟ ଚକ୍ର ବୁଲାଉଛନ୍ତି । ସେଥିରେ ଅଛି ବାରଗୋଟି ଅଖ । ଉତଙ୍କ ବୁଝିଲେ, ଛଅ ଯୁବକ ଛଅ ଋତୁ, ବାର ଅଖ ହେଲେ ବାରମାସ ।

ଉତଙ୍କ ଦେଖିଲେ ଗୋଟିଏ ଅଶ୍ୱ ଧରି ଜଣେ ଜ୍ୟୋତିଷ୍ମାନ ପୁରୁଷ ଦଣ୍ଡାୟମାନ । ସେ ହେଲେ ଛଦ୍ମବେଶୀ ଇନ୍ଦ୍ର । ସେ କୌଣସି ଦେବ ପୁରୁଷ ବୋଲି ଅନୁଭବ କରି ଉତଙ୍କ ଅଳଙ୍କାର ଉଦ୍ଧାର ଦିଗରେ ତାଙ୍କ ସହାୟତା ପ୍ରାର୍ଥନା କଲେ ।





ସେ ଦେବ ପୁରୁଷଙ୍କ ଇଙ୍ଗିତରେ ଅଶ୍ୱଟି ନିଜ ମୁଖରୁ ଓ ନାସାରୁ ପ୍ରଚଣ୍ଡ ନିଆଁ ଓ ଧୂଆଁ ବାହାର କରିବାକୁ ଲାଗିଲା। ସମଗ୍ର ପାତାଳପୁରୀ ଘୁଞ୍ଚୁ ଘୁଞ୍ଚୁ ଅନ୍ଧକାର ହୋଇଗଲା।



ପାତାଳପୁରୀର ନାଗ ବାସିନ୍ଦାମାନେ ସେ ଧୂଆଁରେ ଅତିଷ୍ଠ ହୋଇ ଉଠିଲେ। ବାଧ୍ୟ ହୋଇ ସର୍ପରାଜ ତକ୍ଷକ ଅପହୃତ ଅଳଙ୍କାର ଉତଙ୍କଙ୍କୁ ଫେରାଇଦେଲେ। ସେହି ଯାଦୁଘୋଡ଼ା ଆରୋହଣ କରି ଉତଙ୍କ ମର୍ତ୍ତ୍ୟକୁ ଫେରିଲେ।



ଗୁରୁ-ପତ୍ନୀ ସେ ଅଳଙ୍କାର ଏକ ନିର୍ଦ୍ଦିଷ୍ଟ ଦିନ ଧାରଣ କରିବାକୁ ମାନସିକ କରିଥିଲେ। ସମୟ ପାଖେଇ ଆସିବାରୁ ସେ ଅଧୈର୍ଯ୍ୟ ହୋଇ ଉଠୁଥିଲେ। ଯାହା ହେଉ ପବିତ୍ର ମୁହୂର୍ତ୍ତ ପୂର୍ବରୁହିଁ ଉତଙ୍କ ପହଞ୍ଚିଗଲେ ଓ ତାଙ୍କୁ ଅଳଙ୍କାର ଅର୍ପଣ କଲେ। ଅଭିଯାନରେ ସଫଳତା ହାସଲ ସଙ୍ଗେସଙ୍ଗେ ଉତଙ୍କ ଅର୍ଜନ କରିଥିଲେ ବିପୁଳ ଜ୍ଞାନ।

# କାହାଣୀ-ଶିରୋନାମା-ପ୍ରତିଯୋଗିତା

## ଏକ ଉପଯୁକ୍ତ ଶିରୋନାମା ଦେଇ ୨୫ ଟଙ୍କା ପୁରସ୍କାର-ବିଜୟୀ ହୁଅନ୍ତୁ

?

ଥରେ ଦୁଇଜଣ ରାଜପୁତ୍ରଙ୍କ ଭିତରେ ତର୍କ ହେଲା—ଲଡ଼ୁ ଓ ରସଗୋଲା ଭିତରେ ଉତ୍ତମ ମିଷ୍ଟ କିଏ ?

"ଆମ ରାଜ୍ୟର ପ୍ରଧାନ ବିଚାରପତି ସବୁ ବିଷୟରେ ନିରପେକ୍ଷ ରାୟ ଦେଇ ଖ୍ୟାତି ଅର୍ଜିଛନ୍ତି । ତାଙ୍କ ମତ ନିଆଯାଉ ।" ଜଣେ ରାଜପୁତ୍ର କହିଲେ । ଅନ୍ୟ ଜଣକ ଏ ପ୍ରସ୍ତାବରେ ଏକମତ ହେଲେ ।

ସେଦିନ ଥାଏ ଛୁଟି ଦିନ । ରାଜପୁତ୍ର ଦୁହେଁ ପ୍ରଧାନ ବିଚାରପତିଙ୍କ ପ୍ରାସାଦକୁ ନିମନ୍ତ୍ରଣ କରି ସେମାନଙ୍କ ସନ୍ଦେହ ତାଙ୍କୁ ଜଣାଇଲେ ।

ବିଚାରକ ଗମ୍ଭୀର କଣ୍ଠରେ କହିଲେ, "ଏ ଝଗଡ଼ାରେ ଦୁଇ ପକ୍ଷ ହେଲେ ଲଡ଼ୁ ଓ ରସଗୋଲା । ସେମାନଙ୍କୁ ପରୀକ୍ଷା ନ କରି ରାୟ ଦେବି କିପରି ?"

ସଙ୍ଗେ ସଙ୍ଗେ ଦୁଇଥାଳିଭର୍ତ୍ତି ଲଡ଼ୁ ଓ ରସଗୋଲା ଅଣାଗଲା । ଏକ ପ୍ରକାର ଗାମ୍ଭୀର୍ଯ୍ୟ ସହକାରେ ବିଚାରକ ସେମାନଙ୍କୁ ଉଦରସାତ୍ କଲେ ।

"ଏଥର ଆପଣଙ୍କ ରାୟ କ'ଣ କୁହନ୍ତୁ !" ରାଜପୁତ୍ର ଦୁହେଁ ପଚାରିଲେ ।

"ସତ କଥା କହିଲେ, ଉଭୟ ପକ୍ଷ ବର୍ତ୍ତମାନ ମୋ ପେଟରେ ଶାନ୍ତି ସହିତ ସହକାରେ ସହାବସ୍ଥାନ କରୁଛନ୍ତି । କୌଣସି ବିବାଦ ନାହିଁ ।" ବିଚାରକ ଶୁଣାଇ ଦେଲେ ।

  

ଉପରୋକ୍ତ କାହାଣୀ ପାଇଁ ସୁବିଚିନ୍ତ ଶିରୋନାମାଟିଏ ଠିକ୍ କରି ପୋଷ୍ଟକାର୍ଡରେ ଲେଖି "ଶିରୋନାମା ପ୍ରତିଯୋଗିତା", ଜହ୍ନମାମୁଁ, Chandamama Buildings, 2 & 3 Arcot Road, Madras-600026 ଠିକଣାରେ ନଭେମ୍ବର ୧୦ ତାରିଖ ସୁଦ୍ଧା ପଠାନ୍ତୁ । ତେବେ, ଫଟୋ ପରିଚୟ ପ୍ରତିଯୋଗିତା ପାଇଁ ଲେଖା ଏକା କାର୍ଡ଼ରେ ପଠାଇବେ ନାହିଁ ।

ପ୍ରତିଯୋଗିତାର ଫଳ ଜାନୁଆରି'୭୯ ସଂଖ୍ୟାରେ ପ୍ରକାଶ ପାଇବ

---

ସେପ୍ଟେମ୍ବର ପ୍ରତିଯୋଗିତାର ନିର୍ବାଚିତ ଶିରୋନାମା : "ବୈଷ୍ଣବ ନଗରୀର ରହସ୍ୟ"

ପୁରସ୍କାର ବିଜୟୀ : ଅଜୟ ଦାସ, କଟକ ।

ବିଜୟୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ ।

## ଚିତ୍ର-ପରିଚୟ-ପ୍ରତିଯୋଗିତା : ପୁରସ୍କାର ଟ...

ପୁରସ୍କୃତ ପରିଚୟୋକ୍ତି ଜାନୁଆରୀ ୧୯୭୯ ସଂଖ୍ୟାରେ ପ୍ରକାଶ ପା...







- ★ ଉଭୟ ଚିତ୍ର ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ଗୃର ଧାଡ଼ିରେ ଲେଖା ହୋଇଥିବ ... ପରସ୍ପର ସମ୍ବନ୍ଧିତ ହୋଇଥିବ ।
- ★ ନଭେମ୍ବର ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର ।
- ★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ ୨୫.୦୦ ପୁରସ୍କାର ପଠାଯିବ ।
- ★ ପରିଚୟୋକ୍ତି ସହ ପ୍ରେରକର ନାମ ଓ ଠିକଣା ପୋଷ୍ଟକାର୍ଡରେ ଲେଖା ହୋଇ (ସେଥି... ଅନ୍ୟ କଥା ରହିବା ଅନୁଚିତ) ଜହ୍ନମାମୁଁ ଫଟୋ ପରିଚୟ ପ୍ରତିଯୋଗିତା, ଚନ୍ଦା... ବିଲଡିଙ୍ଗ୍ସ୍, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ ।

---

## ସେପ୍ଟେମ୍ବର ପ୍ରତିଯୋଗିତାର ଫଳ

ପ୍ରଥମ ଚିତ୍ର : "ଦଶ ନ ବାଜୁଣୁ, ପଢ଼ାପଢ଼ି ଛାଡ଼ି, ଶୋଇ ପଡ଼ିଲୁଣି ବାବୁ,
ଦ୍ୱିତୀୟ ଚିତ୍ର : ବଡ଼ ହୋଇଗଲେ ଏହିପରି ଦିନେ ବିରସରେ ଭାବୁଥିବୁ !"
ପୁରସ୍କାର ବିଜୟିନୀ : କୁମାରୀ କନ୍ନୀକା ସିଂହ, ରାଉରକେଲା ।
ବିଜୟିନୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ ।

Printed by B. V. REDDI ...

## ଦନ୍ତ-ଚିକିତ୍ସକମାନେ କହନ୍ତି :

# ନିୟମିତଭାବେ ବ୍ରଶରେ ଦାନ୍ତ ସଫା କରନ୍ତୁ ଓ ମାଢ଼ିର ମାଲିଶ କରନ୍ତୁ; ମାଢ଼ିର କଷ୍ଟ ଓ ଦନ୍ତକ୍ଷୟରୁ ଦୂରେଇ ରହନ୍ତୁ ।

### ଫୋରହ୍ୟାନ୍ସ ବ୍ୟବହାରକାରୀମାନେ ସ୍ୱେଚ୍ଛାରେ କହୁଛନ୍ତି

**"...ମୋତେ ଦାନ୍ତର କୌଣସି କଷ୍ଟ ନାହିଁ..."**

"ଗତ ପନ୍ଦର ବର୍ଷରୁ ମୁଁ ଆପଣଙ୍କ ଫୋରହ୍ୟାନ୍ସ ଟୁଥପେଷ୍ଟ ନିୟମିତଭାବେ ବ୍ୟବହାର କରି ଆସୁଛି ଓ ଏହାକୁ ବ୍ୟବହାର କରି ମୁଁ ପୁରାପୁରି ସନ୍ତୁଷ୍ଟ ।"

"... ଯେବେଠୁ ମୁଁ ଫୋରହ୍ୟାନ୍ସ ଟୁଥପେଷ୍ଟ ବ୍ୟବହାର କରିବା ଆରମ୍ଭ କରିଛି । ମୋ ଦାନ୍ତରେ ଆଦୌ କଷ୍ଟ ନାହିଁ କି ମାଢ଼ି କ୍ଷୟ ହେଉ ନାହିଁ..."

"...ମୁଁ ସବୁବେଳେ ଆପଣଙ୍କ ଫୋରହ୍ୟାନ୍ସ ଟୁଥପେଷ୍ଟ ଓ ଫୋରହ୍ୟାନ୍ସ ଡବଲ ଆକ୍ସନ ଟୁଥବ୍ରଶ ପ୍ରତି କୃତଜ୍ଞ ରହିବି..."

(ହସ୍ତାକ୍ଷର) ସି. ନାଗେଶ କାମଥ
ଅନ୍ଧେରୀ

(କେମ୍ପ୍ରି ମ୍ୟାନର୍ସ ଆଣ୍ଡ କୋ. ଲିମିଟେଡର ଯେକୌଣସି କାର୍ଯ୍ୟାଳୟରେ ଏ ସବୁ ଚିଠି ଓ ଏଭଳି ଅନ୍ୟାନ୍ୟ ଚିଠିଗୁଡ଼ିକର ଫଟୋଷ୍ଟାଟ କପି ଦେଖି ପାରନ୍ତି ।)

ଆକର୍ଷକ ନାରଙ୍ଗୀ ରଙ୍ଗର ପ୍ୟାକରେ






**"...ପ୍ରାୟ ଦଶ ବର୍ଷ ତଳେ ମୁଁ ମାଢ଼ିର କଷ୍ଟ ଭୋଗ କରୁଥିଲି..."**

"ପ୍ରାୟ ଦଶ ବର୍ଷ ତଳେ ମୁଁ ମାଢ଼ିର କଷ୍ଟ ଭୋଗ କରୁଥିଲି ଆଉ ସେତେବେଳେ ମୁଁ ଆପଣଙ୍କ 'ଫୋରହ୍ୟାନ୍ସ' ଟୁଥପେଷ୍ଟ ବ୍ୟବହାର କରିବା ଆରମ୍ଭ କରିଥିଲି ଏବଂ ଆଜି ମୁଁ ଆପଣଙ୍କୁ ସହର୍ଷେ ଓ ଗର୍ବର ସହ ଜଣାଉଛି ଯେ ଏବେ ମୋର ଦାନ୍ତ ବେଶ ମଜବୁତ ଓ ସୁସ୍ଥ । ଏଭଳି ଚମତ୍କାର ଟୁଥପେଷ୍ଟ ତିଆରି କରିଥିବାରୁ ମୁଁ ଆପଣଙ୍କୁ ଅଭିନନ୍ଦନ ଜଣାଉଛି ।"

(ହସ୍ତାକ୍ଷର) କେ.ଏସ. ଗୁପ୍ତା
ଗୌଲିଗୁଡ଼ା, ହାଇଦ୍ରାବାଦ

ଦାନ୍ତର ସଠିକ ଯତ୍ନ ପାଇଁ ପ୍ରତିଦିନ ରାତି ଓ ସକାଳେ ଠିକ ଢଙ୍ଗରେ ଦାନ୍ତ ଘଷା କରିବା ଓ ମାଢ଼ିର ମାଲିଶ କରିବା ପାଇଁ ଫୋରହ୍ୟାନ୍ସ ଟୁଥପେଷ୍ଟ ବ୍ୟବହାର କରନ୍ତୁ । ଏହା ସାଙ୍ଗକୁ ଫୋରହ୍ୟାନ୍ସ ଡବଲ-ଆକ୍ସନ ଟୁଥବ୍ରଶ ବ୍ୟବହାର କରନ୍ତୁ କାରଣ ଏହାକୁ ଦାନ୍ତ ଘଷା କରିବା ସଙ୍ଗେ ସଙ୍ଗେ ମାଢ଼ିର ମାଲିଶ କରିବା ପାଇଁ ବିଶେଷଭାବେ ତିଆରି କରାଯାଇଛି ।

**ମାଢ଼ିରେ କଷ୍ଟ ହେଲେ ସ୍ୱାସ୍ଥ୍ୟର ଅବନତି ଘଟେ**

**ମାଗଣା!** "ଆପଣଙ୍କ ଦାନ୍ତ ଓ ମାଢ଼ିର ଯତ୍ନ" । ଦାନ୍ତର ଯତ୍ନ ସମ୍ବନ୍ଧୀୟ ଏହି ରଙ୍ଗିନ ସୂଚନା-ପୁସ୍ତିକା ପାଇବା ପାଇଁ ଅନୁଗ୍ରହ କରି ଡାକଖର୍ଚ୍ଚ ବାବଦରେ ୨୦ ପଇସାର ଡାକଟିକେଟ୍ ସହିତ ଏହି ଠିକଣାକୁ ଲେଖନ୍ତୁ:
ଫୋରହ୍ୟାନ୍ସ ଡେଣ୍ଟାଲ ଅଡଭାଇଜରୀ ବ୍ୟୁରୋ,
ପୋଷ୍ଟ ବ୍ୟାଗ ନଂ ୧୧୪୬୯, ଡିପାର୍ଟମେଣ୍ଟ T 179-179
ବମ୍ବେ-୪୦୦୦୨୦ ।
ଆପଣଙ୍କ ମନପସନ୍ଦ ଭାଷା ଉଲ୍ଲେଖ କରନ୍ତୁ ।

# ଫୋରହ୍ୟାନ୍ସ

**ଦନ୍ତ-ଚିକିତ୍ସକଙ୍କ ଦ୍ୱାରା ତିଆରି ଟୁଥପେଷ୍ଟ**